ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ପିଟର୍ ପାନ୍

ମୂଳଇଂରାଜୀ ବହି :

PETER PAN

ଅନୁବାଦ :

ଶ୍ରୀମତୀ ସୁକାନ୍ତା ମିଶ୍ର

ଗ୍ରନ୍ଥମନ୍ଦିର

ପ୍ରକାଶକ :

ଅଭିରାମ ମହାପାତ୍ର

**ଗ୍ରନ୍ଥ ମନ୍ଦିର**

ବିନୋଦବିହାରୀ, କଟକ-୨

ମୁଦ୍ରକ :

**ଲିପିକାର**

ଝାଞ୍ଜିରିମଙ୍ଗଳା, କଟକ-୯

ପ୍ରଥମ ମୁଦ୍ରଣ : ଜୁଲାଇ, ୧୯୮୧

ପୁନର୍ମୁଦ୍ରଣ : ମାର୍ଚ୍ଚ, ୧୯୯୦

ମୂଲ୍ୟ : ଟ ୫.୦୦

## ଡାର୍ଲିଂ ପରିବାର

ବହୁଦିନ ତଳର କଥା । ଲଣ୍ଡନ ସହରରେ ୱେଣ୍ଡି, ଜନ୍ ଓ ମାଇକେଲ୍ ନାମରେ ତିନୋଟି ପିଲା ଥାଆନ୍ତି । ତାଙ୍କ ବାପା ଓ ମା'ଙ୍କ ନାମ ଶ୍ରୀ ଓ ଶ୍ରୀମତୀ ଡାର୍ଲିଂ । ତାଙ୍କ ଘର ସାମ୍ନାରେ ଗୋଟିଏ ସୁନ୍ଦର ଗୋଲାପ ଫୁଲର ବଗିଚା ଥାଏ । ତାଙ୍କ ଘରଟି ବାହାରକୁ ଯେପରି ସୁନ୍ଦର ଏବଂ ସଫାସୁତୁରା ଦେଖାଯାଉଥିଲା ଭିତରଟି ମଧ୍ୟ ସେହିପରି ଖୁବ୍ ସୁନ୍ଦର ଏବଂ ପ୍ରଶସ୍ତ । କୋଠରିଗୁଡ଼ିକରେ ଝରକା ବଡ଼ ବଡ଼ । କାନ୍ଥରେ ଜେଜେବାପାଙ୍କ ଅମଳର ଗୋଟିଏ ବଡ଼ ପୁରୁଣା ଘଣ୍ଟା ଏବଂ ପରୀ କାହାଣୀର ସୁନ୍ଦର ସୁନ୍ଦର ତୈଳଚିତ୍ର ମଧ୍ୟ ଝୁଲୁଥାଏ ।

ଏହି ପରିବାରଟି ବିଷୟରେ ଅନେକ ମଜାଳିଆ କଥା ଶୁଣିବାକୁ ମିଳେ । ଉଦାହରଣ ସ୍ୱରୂପ ଏ ଘରେ ପିଲାମାନଙ୍କ କାମ ବୁଝିବା ପାଇଁ କୌଣସି ଆୟା ବା ଧାଈ ନାହିଁ । ତା'ପରିବର୍ତ୍ତେ ସେମାନେ ଗୋଟିଏ କୁକୁର ପୋଷିଥିଲେ ଯାହାର ନାମ ସେମାନେ 'ନାନା' ରଖିଥିଲେ । ନାନା ଭଲ ପୋଷା ମାନିଥାଏ । ଏପରିକି ସେ ପିଲାମାନଙ୍କୁ ପ୍ରତିଦିନ ସ୍କୁଲରେ ନେଇ ପହଞ୍ଚାଇଦିଏ । ସ୍କୁଲରୁ ପୁଣି ଘରକୁ ନେଇଆସେ । ଯେଉଁଦିନ ବର୍ଷା ହୁଏ ସେଦିନ ଛତା ମଧ୍ୟ ସାଙ୍ଗରେ ନେଇଯାଏ । ପିଲାମାନେ, ତୁମେମାନେ ବୋଧହୁଏ ଜାଣି ଆଶ୍ଚର୍ଯ୍ୟ ହେବ ଯେ, ସେହି ପିଲାମାନଙ୍କ ଗାଧୁଆ ପାଧୁଆ ତଥା ପୋଷାକ ପିନ୍ଧିବା କାମରେ ମଧ୍ୟ ନାନା ସାହାଯ୍ୟ କରେ । ସେଥିପାଇଁ ପିଲାମାନେ ମଧ୍ୟ ନାନାକୁ ଖୁବ୍ ସ୍ନେହ କରନ୍ତି ।

ଥରେ ଶୀତଦିନ ସନ୍ଧ୍ୟାବେଳେ ନାନା ନିଆଁ ଚୁଲ୍ଲୀ ପାଖରେ ଆରାମରେ ଘୁଙ୍ଗୁଡ଼ିମାରି ଶୋଇଥାଏ । ହଠାତ୍ ଜେଜେବାପାଙ୍କ ଘଣ୍ଟାଟି ଠନ୍ ଠନ୍ ହୋଇ ନଅ ଥର ବାଜିଉଠିଲା । ଏହାର ଅର୍ଥ ପିଲାମାନଙ୍କ ଶୋଇବା ସମୟ ହୋଇଗଲା । ନାନା ସାଙ୍ଗେ ସାଙ୍ଗେ ଉଠିପଡ଼ିଲା, ଟିକିଏ ହାଇମାରି ଅଳସ ଭାଙ୍ଗିଲା ଏବଂ ମୋଡ଼ିଭାଡ଼ିହୋଇ ଦେହକୁ ସିଧା କଲା । ତା'ପରେ ଠିଆହୋଇ କାନ୍ଥରେ ଥିବା ସୁଇଚ୍‌କୁ ପାଟିରେ ଟିପି ଲାଇଟ୍ ଲଗାଇଲା ଏବଂ ଉପର ମହଲାକୁ ହଲି ହଲି ଯାଇ ଗାଧୁଆଘରେ ପାଣିଟବ୍‌ରେ ବୁଡ଼ ଗାଧୋଇଲା ।

ନାନା ତା'ପରେ ଘରର ସାନପୁଅ ମାଇକେଲ୍‌କୁ ଖୋଜି ଖୋଜି ତା' ପାଖରେ ପହଞ୍ଚିଲା । ମାଇକେଲ୍ ସମସ୍ତଙ୍କଠାରୁ ସାନ ହୋଇ-ଥିବାରୁ ନାନା ତାକୁ ପ୍ରଥମେ ଶୁଆଇ ଦେବାକୁ ଚାହୁଁଥିଲା । ସେତେବେଳେ କିନ୍ତୁ ମାଇକେଲ୍‌ର ଗାଧୋଇବାକୁ ଜମା ଇଚ୍ଛା ନ ଥାଏ । କିନ୍ତୁ ନାନା ନିୟମ ମାନିବାରେ ଖୁବ୍ ଉତ୍ସାହ । ସେ ମାଇକେଲ୍‌କୁ ଟାଣିଟାଣି ଗାଧୁଆଘରେ ପୂରାଇ ଥଣ୍ଡା ଧରିବ ବୋଲି ଦୁଆର ବନ୍ଦକରିଦେଲା । କିଛି ସମୟପରେ ଶ୍ରୀମତୀ ଡାର୍ଲିଂ ପିଲା-ମାନେ କଣ କରୁଛନ୍ତି ଦେଖିବା ପାଇଁ ଆସିଲେ । ମାଇକେଲ୍‌କୁ ଉଷୁମ ପାଣିରେ ତା'ର ରବର ଖେଳନା ଧରି ଗାଧୋଉଥିବା ଜାଣି ଖୁବ୍ ଖୁସି ହେଲେ ।

ଶ୍ରୀମତୀ ଡାର୍ଲିଂ ହଠାତ୍ ସେତେବେଳେ ବାହାରପଟୁ ଏକ ଅଦ୍ଭୁତ ଶବ୍ଦ ଆସୁଥିବା ଶୁଣିପାରିଲେ । ସେ ଝରକାର କାଚ ବାଟେ ଦେଖିଲେ ଯେ, ଗୋଟିଏ ସୁନ୍ଦର ସାନ ପିଲାଟିଏ ତାଙ୍କ ଝରକା ଖୋଲିବା ପାଇଁ ଚେଷ୍ଟାକରୁଛି । ସେ ଆଶ୍ଚର୍ଯ୍ୟରେ ପାଟିକରି ଉଠିଲେ । ପିଲାଟି ଶ୍ରୀମତୀ ଡାର୍ଲିଂଙ୍କ ପାଟି ଶୁଣି ସାଙ୍ଗେ ସାଙ୍ଗେ କୁଆଡ଼େ ଉଡ଼ିଗଲା । ସେ ଝରକା ଖୋଲି ଦେଖିଲେ;

କିନ୍ତୁ ପଡ଼ିଶା ଘର ଛାତ ତଥା ଉପରର ନୀଳ ଆକାଶ ଛଡ଼ା ଆଉ କିଛି ଦେଖିପାରିଲେ ନାହିଁ । ଆଶ୍ଚର୍ଯ୍ୟର ବିଷୟ ଯେ, ତା' ପୂର୍ବଦିନ ମଧ୍ୟ ଠିକ୍ ସେହିପରି ଘଟଣାଟିଏ ଘଟିଥିଲା ଏବଂ ନାନା ଭୁକି ଭୁକି ଝରକା ପାଖକୁ ଦୌଡ଼ି ଯାଇଥିଲା । ସେ୍ଛଟ ପିଲାଟିଏ ଦେଖି ସେଥିରେ ଗରଗର ହେଲା । କିନ୍ତୁ ପିଲାଟିକୁ ଧରି ପାରିଲାନାହିଁ । କେବଳ ତା'ର ଛାଇଟିକୁ ହିଁ ଧରି ପାରିବାରେ ସକ୍ଷମ ହୋଇପାରିଥିଲା । ତା' ପରଦିନ ଶ୍ରୀମତୀ ଡାର୍ଲିଂ ସେଇ ଛାଇଟିକୁ ଆଲମାରିରେ ସାଇତି ରଖିଦେଲେ ।

ଶ୍ରୀମତୀ ଡାର୍ଲିଂ ସେଇ ଛାଇଟିକୁ ତାଙ୍କ ସ୍ୱାମୀଙ୍କୁ ଦେଖାଇ ଗର୍ବର ସହିତ କହିଲେ ଯେ ନାନାକୁ ପିଲାଙ୍କ ନର୍ସଭାବେ ପାଇ ସେ ଖୁବ ନିଶ୍ଚିନ୍ତ ହୋଇ ରହିପାରିଛନ୍ତି, ତା'ପରେ ସେ ଝରକା ପାଖରେ ଦେଖିଥିବା ଅଦ୍ଭୁତ ପିଲାଟି ବିଷୟରେ ସ୍ୱାମୀଙ୍କୁ କହିଲେ ଓ ନାନା କିପରି ସାଙ୍ଗେ ସାଙ୍ଗେ ଭୁକି ଦୌଡ଼ିଯାଇ ଝରକାଟି ବନ୍ଦକରିଦେଲା ସେ ବିଷୟ ମଧ୍ୟ ବର୍ଣ୍ଣନା କରି ତାଙ୍କୁ କହିଲେ, "ନାନା ଏତେ ଶୀଘ୍ର ଯାଇ ଝରକାଟି ବନ୍ଦ କରି ଦେଇଥିଲା ଯେ, ସେ ଅଦ୍ଭୁତ ପିଲାଟିର ଛାଇଟି କଟିଯାଇ ଘର ଭିତରେ ରହିଗଲା । ତୁମେ ଏଥିରୁ ଜାଣିପାରୁଥିବ ଯେ, ନାନା କେତେ ସାହାଯ୍ୟକାରୀ ।" ଶ୍ରୀମତୀ ଡାର୍ଲିଂ ଏକଥା ଶେଷ କରିଛନ୍ତି କି ନାହିଁ ତାଙ୍କ ବଶମ୍ବଦ କୁକୁର ମାଇକେଲ୍‌ର କାଶ ଔଷଧ ବୋତଲ୍‌ଟି ଧରି ସେ ଘର ଭିତରକୁ ଆସିଲା । କିନ୍ତୁ ମାଇକେଲ୍ ଔଷଧ ବୋତଲଟି ଦେଖି ପାଟିକରି ଉଠିଲା ଯେ ସେ ଔଷଧ ଖାଇବ ନାହିଁ । ତା'ପରେ ୱେଣ୍ଡି ମାଇକେଲ୍‌କୁ ଏ ବିଷୟରେ ସାହାଯ୍ୟ କରିବାପାଇଁ ଚୋଟିଏ ଉପାୟ ପାଞ୍ଚି ସେଠାକୁ ଆସି କହିଲା—"ମାଇକେଲ୍ ସାଙ୍ଗରେ ବାପା ମଧ୍ୟ କିଛି ଔଷଧ ଖାଇବା ଉଚିତ୍ ।"

"ଠିକ୍ ଅଛି । ଦେଖିବା କିଏ ବେଶୀ ସାହସୀ ।"—ବାପା କହିଲେ ।

ୱେଣ୍ଡି ଯାଇ ଦୁଇଟି ଗ୍ଲେଟ୍ ଗ୍ଲାସ୍ ଖୋଜିଆଣିଲା ଏବଂ ପ୍ରତ୍ୟେକରେ କିଛି କିଛି ଔଷଧ ଢାଳି ଗୋଟିଏ ବାପାଙ୍କ ହାତକୁ ଆଉ ଗୋଟିଏ ମାଇକେଲ୍ ହାତକୁ ବଢ଼ାଇଦେଇ କହିଲା, 'ବର୍ତ୍ତମାନ ଔଷଧ ପିଇବା ପାଇଁ ପ୍ରସ୍ତୁତ ହୋଇଯାଅ । ଏକ-ଦୁଇ-ତିନି ।" ମାଇକେଲ୍ ସବୁତକ ଔଷଧ ଏକା ସାଙ୍ଗରେ ବଡ଼ ମଣିଷଙ୍କ ଭଳି ଢୋକିଦେଲା । କିନ୍ତୁ ବାପା କେବଳ ପିଇବାର ବାହାନା କରି ତାଙ୍କ ଗ୍ଲାସ୍‌ଟିକୁ ପଛପଟେ ଲୁଚାଇ ରଖିଲେ । ଜନ୍ ବାପାଙ୍କର ଏ କାରସାଦ ଦେଖିପାରିଥିଲା । ସେ ପାଟିକରି କହିଲା, "ବାପା ଔଷଧ ପିଇନାହାନ୍ତି । କେବଳ ପିଇବା ବାହାନା କଲେ ।" ଯେତେବେଳେ ମାଇକେଲ୍ ଏହା ଜାଣିପାରିଲା ଯେ, ସେ ଠକି ହୋଇଯାଇଛି ସେ ପାଟିକରି କାନ୍ଦିବାକୁ ଲାଗିଲା ।

ନାନା ଗାଧୁଆଘରକୁ ଯେମିତି ଯାଇଛି ବାପା ସମସ୍ତଙ୍କୁ କହିଲେ, "ସମସ୍ତେ ମୋ ଆଡ଼େ ଶୁଣ । ମୁଁ ଗୋଟିଏ ବଢ଼ିଆ ମଜା କଥାଟିଏ ଭାବିଛି । ମୁଁ ମୋର ଔଷଧତକ ନାନାର ଖାଇବା ଜାଗାରେ ଢାଳି ଦେଉଛି ଏବଂ ସେ ଯେତେବେଳେ ଆସିବ ଏହାକୁ ଦୁଧ ବୋଲି ଭାବି ପିଇଯିବ । ଖୁବ୍ ମଜା ହେବ ! ନା ?"

ଔଷଧର ରଙ୍ଗ ମଧ୍ୟ ଦୁଧ ଭଳି ଧଳା; କିନ୍ତୁ ପିଲାମାନେ ଏଥିରେ କଣ ଯେ ମଜାକଥା ଥିଲା ଜାଣିପାରିଲେ ନାହିଁ । ବାପା ଯେତେବେଳେ ଔଷଧତକ ନାନାର ଖାଇବା ଜାଗାରେ ଢାଳିଦେଲେ ସେମାନେ କୌଣସି ଆଗ୍ରହ ନ ଦେଖାଇ ଖାଲି ଚାହିଁ ରହିଥାନ୍ତି । ବିଶ୍ୱସ୍ତ ନାନା ସହିତ ଥଟ୍ଟା ତାଙ୍କର ପସନ୍ଦ ହେଲା ନାହିଁ । ବାପା କିନ୍ତୁ ଆଗକୁ କ'ଣ ମଜା ହେବ ଭାବି ଭାବି ଖୁବ୍ ଖୁସି ହେଉଥାନ୍ତି । ତା'ପରେ ଯେତେ-

ବେଳେ ନାନା ଆସିଲା ସେ ତାକୁ କହିଲେ, "ସ୍ନେହର ନାନା, ତୁ ପିଇବା ପାଇଁ ମୁଁ ରଖିଦେଇଛି ଯା ପିଇଦେ ।" ଏହା କହି ସେ ତାର ପିଠିକୁ ଆଉଁସି ଦେଲେ ।

ନାନା ମଧ୍ୟ ଖୁସିରେ ତାର ଲୋମବହୁଳ ଲାଞ୍ଜଟି ହଲାଇ ତା' ଖାଇବାଜାଗା ନିକଟକୁ ଖୁବ୍ ଆଗ୍ରହର ସହିତ ଦୌଡ଼ିଗଲା ଏବଂ ଏକା ନିଃଶ୍ୱାସରେ ପିଇବାକୁ ଲାଗିଲା । କିଛିଟା ପିଇବା ପରେ ଏହା ଦୁଧ ନୁହେଁ ବୋଲି ଜାଣି ପାରି ଦୁଃଖର ସହିତ ଶ୍ରୀ ଡାର୍ଲିଙ୍ଗଙ୍କ ଆଡ଼େ କରୁଣ ଦୃଷ୍ଟିରେ ଚାହିଁଲା । ତାର ବଡ଼ବଡ଼ ଆଖିରୁ ଲୁହର ଧାର ଗଡ଼ିଯାଉଥାଏ ଏବଂ ଦୋଷୀଙ୍କ ପରି ଗୋଡ଼ଦୁଇଟି ଛନ୍ଦି ବସିଗଲା । ଅନ୍ୟ ସାଧାରଣ କୁକୁରଙ୍କ ପରି ସେ ହତୋତ୍ସାହ ହୋଇ ପଡ଼ିଥିବା ପରି ଦେଖାଗଲା ।

ଶ୍ରୀ ଡାର୍ଲିଙ୍ଗ ତା'ପରେ ସମସ୍ତଙ୍କ ମନ ଭୁଲାଇବା ପାଇଁ କହିଲେ, "ଆରେ, ନା'ମ, ମୁଁ ମଜାରେ ସେପରି କରିଥିଲି ।" ଏହା କହି ସେ ନାନାର କାନକୁ ଧରି ଟାଣି ଟାଣି ପିଲାଙ୍କ ଶୋଇବାଘରୁ ଘର ପଛ-ପଟକୁ ନେଇ ତାକୁ ବାନ୍ଧିଦେଲେ । ସେ ଖୁବ୍ ରାଗି ଯାଇଥିଲେ । କାରଣ ପିଲାମାନେ ତାଙ୍କର ଏ ଥଟ୍ଟା ମଜାରେ ଟିକିଏ ହେଲେ ଉତ୍ସାହ ଦେଖାଇଲେ ନାହିଁ । ତେଣୁ ପିଲାମାନଙ୍କୁ ସେ ଯେ ଏ ଘରର ମୁରବି ତାହା ଜଣାଇଦେବାପାଇଁ ରାଗି ଏହିପରି କଲେ ।

ନାନାକୁ ଏହିପରି ଟାଣି ଟାଣି ନେବା ଦେଖି ପିଲାମାନେ କାନ୍ଦିବାକୁ ଲାଗିଲେ । କିନ୍ତୁ ସେମାନଙ୍କ ମା ଶ୍ରୀମତୀ ଡାର୍ଲିଙ୍ଗ ସେମାନଙ୍କୁ ଆଶ୍ୱାସନା ଦେଇ ଗେଲକରି ଶେଯଉପରକୁ ନେଇ କମ୍ବଳଘୋଡ଼ାଇ ଦେଲେ ଏବଂ ଗୀତ ଶୁଣାଇ ଶୁଣାଇ ଶୁଆଇଦେଲେ । ପିଲାମାନେ ଶୋଇପଡ଼ିବା ପରେ ଧୀରେ ଧୀରେ ନିଃଶବ୍ଦରେ ସେହି ଘରୁ ବାହାରି ଚାଲିଗଲେ ଓ ଶ୍ରୀ ଡାର୍ଲିଙ୍ଗଙ୍କ ସାଙ୍ଗରେ ବୁଲିବାକୁ ଚାଲିଗଲେ ।

ପିଲ୍ମାନେ ଶୋଇସାରିବାପରେ ଘରଟି ଖୁବ୍ ଶାନ୍ତ ଓ ନିସ୍ତବ୍ଧ ହୋଇଗଲା । ହଠାତ୍ ଘର ଭିତରର ବଜୁଳିବତିଗୁଡ଼ିକ ଗୋଟାକ ପରେ ଗୋଟାଏ ଲିଭିଗଲା ଏବଂ ନିଆଁର ଗୋଟେ ପିଣ୍ଡୁଳାଟାଏ ସେ ଘର ଭିତରକୁ ଆସି ବୁଲିଲା । ସେହି ନିଆଁମୁଣ୍ଡାଟି 'ଘୁଙ୍ଗୁରପରୀ' ନାମକ ଗୋଟିଏ ସୁନ୍ଦର ପରୀ । 'ଘୁଙ୍ଗୁରପରୀ' କଅଁଳିଆ ପତ୍ରରେ ତିଆରି ଖୁବ୍ ସୁନ୍ଦର ପୋଷାକ ପିନ୍ଧିଥାଏ । ପୋଷାକଟି ଏପରି ତିଆରି ହୋଇଥାଏ ଯେ ପରୀଟିର ଶରୀର ମଧ୍ୟ କିଛି ଅଂଶ ବାହାରକୁ ଦେଖା ଯାଉଥାଏ । ବାହାରକୁ ଦେଖାଯାଉଥିବା ଅଂଶରୁ ଅପୂର୍ବ ଜ୍ୟୋତି ବାହାରି ଘରକୁ ଆଲୋକିତ କରିଦେଉଥାଏ । ପରୀଟି ପ୍ରଥମେ ଘରର ଏପାଖେ ସେପାଖେ ଖୁବ୍ ବୁଲିଲା ଏବଂ ଶେଷକୁ ଗୋଟିଏ କୋଣରେ ଲୁଚିଗଲା ।

ପରୀଟି ଆସିବାର କିଛି ସମୟ ପରେ ଘରର ଝରକାଟି ଖୋଲି-ଗଲା ଏବଂ ପିଟର୍ ନାମକ ପିଲାଟିଏ ଘର ଭିତରକୁ ପଶିଆସିଲା । ସେ ଧୀରେ ଧୀରେ ଘୁଙ୍ଗୁରପରୀକୁ ଡାକି ପଚାରିଲା—"ବୋଧହୁଏ ତୁ ଜାଣିଥିବୁ ସେମାନେ ମୋର ଛାଇଟିକୁ କେଉଁଠି ରଖିଛନ୍ତି ?" ପରୀ-ମାନେ ସବୁକଥା ଜାଣିପାରନ୍ତି । ତେଣୁ ଘୁଙ୍ଗୁରପରୀ ତାକୁ କହିଲା ଯେ, ସେମାନେ ତାର ଛାଇଟିକୁ ପିଲାଙ୍କ ଶୋଇବା ଘରର ପୋଷାକ ରଖିବା ଆଲମାରିର ଦ୍ୱିତୀୟ ଥାକରେ ରଖିଛନ୍ତି ।

ପିଟର୍ ଖୁସିରେ ଆଲମାରୀ ପାଖକୁ ଦୌଡ଼ିଗଲା ଏବଂ ତାର ଛାଇଟିକୁ ଟାଣିଆଣିଲା । ଛାଇଟି ଖୁବ୍ ସାବଧାନତାର ସହିତ ଗୁଡ଼ା ହୋଇ ରଖାହୋଇଥିଲା । ବର୍ତ୍ତମାନ ପିଟର୍ ତା'ର ଛାଇଟି ସିନା ଫେରିପାଇଲା; କିନ୍ତୁ ତାକୁ ପୁଣି ତା'ଦେହ ସାଙ୍ଗରେ କିପରି ଯୋଡ଼ିବ ଭାବୁଥିଲା । ଏହିପରି ଭାବୁ ଭାବୁ ହଠାତ୍ ତାକୁ ଗୋଟିଏ ଉପାୟ ଦିଶିଲା । ସେ ଛାଇଟିକୁ ଅଠା ସାହାଯ୍ୟରେ ଯୋଡ଼ିବ ବୋଲି

ଠିକ୍ କଲା । ସେ ତାର ପାଦରେ କିଛି ଅଠା ଏବଂ ଛାଇରେ କିଛି ଅଠା ଲଗାଇଲା । କିନ୍ତୁ ତାର ଏ ଚେଷ୍ଟାଟି ବୃଥା ହେଲା । ଛାଇଟି ତା' ପାଦରେ ଲାଗିପାରିଲାନାହିଁ ।

ପିଟର୍ ବାରମ୍ବାର ଛାଇଟିକୁ ପାଦରେ ଯୋଡ଼ିବାପାଇଁ ଚେଷ୍ଟା କରି କରି ହାଲିଆ ହେଲା ସିନା କୃତକାର୍ଯ୍ୟ ହୋଇପାରିଲାନାହିଁ । ଶେଷରେ ବିଚରା ପିଟର୍ ନିରାଶହୋଇ କାନ୍ଦିବାକୁ ଲାଗିଲା । ତା'ର କାନ୍ଦ ଶବ୍ଦରେ ୱେଣ୍ଡିର ନିଦ ଭାଙ୍ଗିଗଲା । ସେ ନିଦରୁ ଉଠି ଶେଯ ଉପରେ ବସିଲା ଏବଂ ଜଣେ ଅଜଣା ଅଶୁଣା ପିଲା ତାଙ୍କ ଘରେ ବସି କାନ୍ଦୁଥିବା ଦେଖି ନ ଡରି ସାହସର ସହିତ ପଚାରିଲା—"ତୁମେ କାହିଁକି କାନ୍ଦୁଛ ?"

ପିଟର୍ ସାଙ୍ଗେ ସାଙ୍ଗେ ୱେଣ୍ଡି ପାଖକୁ ଯାଇ ନମସ୍କାର କଲା । ୱେଣ୍ଡି ଏହା ଦେଖି ଖୁବ୍ ଖୁସି ହେଲା ଏବଂ ସେ ମଧ୍ୟ ପିଟର୍‌କୁ ନମସ୍କାର କଲା । ତା'ପରେ ପିଟର୍ ୱେଣ୍ଡିକୁ ପଚାରିଲା—"ତୁମ ନାଁ କଣ ?"

"ୱେଣ୍ଡି ଡାର୍ଲିଙ୍ଗ ଏବଂ ତୁମ ନାଁ କଣ ?"

"ପିଟର୍ ପାନ୍ ।"

"ତୁମ ଘର କେଉଁଠି ?"

"ଡାହାଣ ପଟର ଦ୍ୱିତୀୟ ମୋଡ଼ ଏବଂ ତା'ପରେ ନାକ ସିଧା ଚାଲିଲେ ସକାଳ ପର୍ଯ୍ୟନ୍ତ ।"

"ତୁମ ଠିକଣାଟି ଭାରି ମଜାଳିଆ ।"

"ନା, ଏଥିରେ କିଛି ମଜା ନାହିଁ ।"—ପିଟର୍ କହିଲା ।

"ତୁମ ମା'ଙ୍କ ପାଖକୁ କ'ଣ ଏହି ଠିକଣାରେ ଚିଠି ଆସୁଛି ?"—ୱେଣ୍ଡି ପଚାରିଲା ।

"ମୋର ମା' ନାହାନ୍ତି ।"—ପିଟର୍ କହିଲା ।

"ଆହା—ବର୍ତ୍ତମାନ ତୁମେ ସେଥିପାଇଁ କାନ୍ଦୁଥିଲ ନା ?" ଏହା କହି ଓ୍ୱେଣ୍ଡି ଶେଯରୁ ଡେଇଁପଡ଼ି ପିଟର୍ ପାଖକୁ ଦୌଡ଼ିଆସିଲା ।

"ମୋର ମା' ନାହାନ୍ତି ବୋଲି ମୁଁ କାନ୍ଦୁ ନଥିଲି । ମୋର କାନ୍ଦିବାର କାରଣ ହେଉଛି ଯେ, ମୋର ଛାଇଟିକୁ ମୁଁ ମୋ ଦେହରେ ଯୋଡ଼ି ପାରୁନାହିଁ ।"

"ତୁମେ ବ୍ୟସ୍ତ ହୁଅ ନାହିଁ । ମୁଁ ତୁମ ଦେହରେ ଏହାକୁ ସିଲେଇ କରିଦେବି ।" ଏହା କହି ଓ୍ୱେଣ୍ଡି ସାଙ୍ଗେ ସାଙ୍ଗେ ଛୁଞ୍ଚି ସୂତା ଧରି କାମରେ ଲାଗିପଡ଼ିଲା । ଛାଇଟି ପାଦରେ ସିଲେଇ ହେଲାବେଳେ ପିଟରକୁ ବହୁତ କଷ୍ଟ ହେଉଥାଏ । କିନ୍ତୁ ସେ ଦାନ୍ତଚିପି ସବୁ ସହିଯାଉଥାଏ । ଏପରିକି ଟୋପାଏ ଲୁହ ତା' ଆଖିରୁ ବୁହାଇଲା ନାହିଁ । କିଛି ସମୟ ପରେ ଛାଇଟି ତା'ଦେହରେ ଠିକ୍ ଭାବେ ଯୋଡ଼ି ହୋଇଗଲା । ପିଟର୍ ଖୁସିରେ ନାଚିବା, ଡେଇଁବା ଆରମ୍ଭ କଲା ଏବଂ ଛାଇଟି ମଧ୍ୟ ଠିକ୍ ତାର ଅନୁକରଣ କରୁଥିବା ଦେଖି ସନ୍ତୋଷ ହେଲା । ପିଟର୍ ଖୁସିରେ ପାଟିକରି କହିଲା, "ମୁଁ କି ଗୁଣିଲୋକ, ଚତୁର ଏବଂ କି ସୁନ୍ଦର ପିଲାଟିଏ ଦେଖ !"

"ତୁମେ କି ଗର୍ବୀ ?" ଓ୍ୱେଣ୍ଡି ଆଶ୍ଚର୍ଯ୍ୟର ସହିତ କହିଲା । "ଅବଶ୍ୟ ମୁଁ ତୁମକୁ ଏ କାମରେ ଟିକିଏ ସାହାଯ୍ୟ କରିଛି ।"

"ହଁ, ତୁମେ ଖୁବ୍ ଅଳ୍ପ ସାହାଯ୍ୟ କରିଛ ।" ପିଟର୍ ଏହା କହି ପୁଣି ନାଚିବାକୁ ଲାଗିଲା ।

"କିଣ କହିଲ ଟିକିଏ ?" ଯଦି ମୁଁ ତୁମର କିଛି ସାହାଯ୍ୟ କରି-ନାହିଁ, ତେବେ ଯାଉଛି ଶେଯ ଭିତରକୁ ଶୋଇପିବି ।" ଏହା କହି ସେ ଶେଯ ଉପରକୁ ଡେଇଁଯାଇ କମ୍ବଳ ଘୋଡ଼ାଇ ହୋଇ-ପଡ଼ିଲା ।

"ଓ୍ୱେଣ୍ଡି ! ଦୟାକରି ତୁମେ ଲୁଚଯାଅ ନାହିଁ । ମୁଁ ଯେତେବେଳେ ବେଶି ଖୁସି ହୋଇଯାଏ ସେତେବେଳେ ଏଣୁ ତେଣୁ କହିଯାଏ । କୋଡ଼ିଏଟି ପୁଅପିଲାଙ୍କ ଅପେକ୍ଷା ତୁମଭଳି ଗୋଟିଏ ଝିଅ ପିଲା ମୋ ପାଇଁ ବେଶି ମୂଲ୍ୟବାନ ।"

ଓ୍ୱେଣ୍ଡି ବୟସରେ ସାନଝିଅଟିଏ ହୋଇଥିଲେ ମଧ୍ୟ ସ୍ତ୍ରୀମାନଙ୍କ ପରି ନିଜର ପ୍ରଶଂସା ଶୁଣି ଖୁବ୍ ଖୁସି ହୋଇଗଲା ଏବଂ କମ୍ବଳ ଭିତରୁ ମୁଣ୍ଡଟି କାଢ଼ି ଟିକିଏ ଉଣ୍ଡିଲା । ସମବୟସ ପିଟର୍ ସହିତ ଟିକିଏ ଗେଲ୍ ହେବାପାଇଁ ତାର ପ୍ରବଳ ଇଚ୍ଛା ହେଲା ଏବଂ କହିଲା, "ପିଟର୍ ! ତୁମେ ଯଦି ମୋତେ ଏତେ ଭଲ ପାଅ ତାହେଲେ ମୋତେ ଟିକିଏ ସ୍ନେହ କର; ଅର୍ଥାତ୍ ଗୋଟିଏ ଚୁମା ଦିଅ ।" କିନ୍ତୁ ପିଟର୍ ସ୍ନେହର ଅର୍ଥ କ'ଣ କିଛି ଜାଣିନଥାଏ । ତେଣୁ ସେ ଓ୍ୱେଣ୍ଡିର ମନରକଥା କିଛି ବୁଝି ନ ପାରି କେବଳ ହାତଟିକୁ ଓ୍ୱେଣ୍ଡି ଆଡ଼କୁ ବଢ଼ାଇ ଦେଲା ।

ବର୍ତ୍ତମାନ ଓ୍ୱେଣ୍ଡି ଜାଣିପାରିଲା ଯେ, ପିଟର୍ ସ୍ନେହ ମାନେ କ'ଣ କିଛି ଜାଣି ନାହିଁ । କିନ୍ତୁ ଓ୍ୱେଣ୍ଡି, 'ତୁ ସ୍ନେହ କଣ ଜାଣିନୁ' ବୋଲି କହି ତାକୁ ଥଟ୍ଟା କରି ତା' ମନରେ କଷ୍ଟଦେବାକୁ ଚାହୁଁନଥିଲା । ତେଣୁ ସେ ଗୋଟିଏ ବୋତାମ ତା' ହାତ ଉପରେ ଥୋଇଦେଲା । ପିଟର୍‌କୁ ବୋତାମଟି ଖୁବ୍ ପସନ୍ଦ ହେଲା । ସେ ବୋତାମଟି ଦେଖି ଭାବିଲା ବୋଧହୁଏ ଏହି ଜିନିଷଟିର ନାମ ସ୍ନେହ ହୋଇଥିବ । ଓ୍ୱେଣ୍ଡି ପୁଣି ପିଟର୍‌କୁ ସ୍ନେହ କରିବାକୁ କହିବାରୁ ସେ ବୋତାମଟି ଓ୍ୱେଣ୍ଡି ହାତକୁ ଫେରାଇଦେଲା ।

ଓ୍ୱେଣ୍ଡି ବ୍ୟସ୍ତ ହୋଇ କହିଲା, "ଓହୋ, ମୁଁ ତୁମକୁ ବୋତାମ ମାଗୁନି ! ମୁଁ ଏହା ପ୍ରତିବଦଳରେ ତୁମଠାରୁ ସ୍ନେହ ଚାହୁଁଛି ।"

"ସେ ପୁଣି କି ଜିନିଷ ?" ପିଟର୍ ଆଶ୍ଚର୍ଯ୍ୟହୋଇ ପଚାରିଲା ।

"ଏ ଜିନିଷଟି ହେଉଛି," କହି ୱେଣ୍ଡି ପିଟର୍‌ର ଗାଲରେ ଗୋଟିଏ ଛୋଟ ଚୁମାଟିଏ ଦେଇଦେଲା। ପିଟରକୁ ଏ ଜିନିଷଟି ଆହୁରି ଅଧିକ ଭଲ ଲଗିଲା। ସେ ଖୁସିରେ ୱେଣ୍ଡିକୁ ମଧ୍ୟ ତା'ବଦଳରେ ଗୋଟିଏ ଚୁମା ତା' ଗାଲରେ ଦେଲା। ସେହିଦିନଠାରୁ ପିଟର୍ ଚୁମା ଦେବାକୁ ବା ଆଦର କରିବାକୁ 'ବୋତାମ' ନାଁରେ ଜାଣେ, ଏବଂ ବୋତାମର ନାଁ ସ୍ନେହ ବୋଲି ଭାବେ। ତା'ପରେ ୱେଣ୍ଡି ପିଟର୍‌କୁ ପଚାରିଲା, "ଆଚ୍ଛା ପିଟର୍, ତୁମର ବୟସ କେତେ ହେବ ?"

"ମୁଁ ଜାଣିନି। କିନ୍ତୁ ମତେ ବେଶି ବୟସ ହୋଇନାହିଁ। ଏହା ମୁଁ ଭଲ ରୂପେ ଜାଣେ। ଯେଉଁଦିନ ମୁଁ ଜନ୍ମ ହୋଇଥିଲି, ସେଦିନ ମୁଁ ଘରୁ ଲୁଚି ପଳେଇଆସିଥିଲି।"

"କାହିଁକି ଲୁଚି ପଳେଇଆସିଲ ?"

"କାରଣ ମୁଁ ମୋ ବାପା, ମା' ବସି ମୋ ଭବିଷ୍ୟତ ବିଷୟରେ କଥା ହେଉଥିବା ଶୁଣିଲି। ସେମାନେ ଠିକ୍ କରୁଥିଲେ ଯେ ମୁଁ ଯେତେବେଳେ ବଡ଼ ହେବି ସେତେବେଳେ କ'ଣ ହେବି। କିନ୍ତୁ ମୁଁ ବଡ଼ ହେବା ପାଇଁ ଜମା ଚାହୁଁନଥିଲି।" ପିଟର୍ ଯେତେବେଳେ ଏହା କହୁଥାଏ ରାଗରେ ଗୋଡ଼କୁ ତଳେ ପିଟୁଥାଏ। ପୁଣି କହିଲା, "ମୁଁ ସବୁବେଳେ ଛୋଟପିଲା ଭାବେ ରହି ମଜା କରିବା ପାଇଁ ଚାହୁଁଥିଲି। ତେଣୁ ମୁଁ ଘରୁ ଲୁଚି ପଳେଇଆସି ବହୁଦିନ ପର୍ଯ୍ୟନ୍ତ ପରୀମାନଙ୍କ ସାଙ୍ଗରେ ରହିଲି।"

ପିଟର୍ ପରୀମାନଙ୍କ ବିଷୟରେ ଜାଣିଥିବାରୁ ୱେଣ୍ଡିର ଆଗ୍ରହ ବଢ଼ିଲା। କାରଣ ସେ ପରୀମାନଙ୍କ ବିଷୟରେ ଶୁଣିବାକୁ ଭଲପାଏ। ପରୀଙ୍କ ନାମ ଶୁଣି ସେ ଖୁସିରେ ଡେଇଁବାକୁ ଲଗିଲା ଏବଂ ଖୁବ୍ ଉତ୍ସାହର ସହିତ କହିଲା, "ପିଟର୍! ତୁମେ କଣ ସତରେ, ପରୀମାନଙ୍କ ବିଷୟରେ ଜାଣିଛ ?"

"ହଁ, ମୁଁ ଜାଣେ । ଦେଖ, ୱେଣ୍ଡି ଯେତେବେଳେ ପ୍ରଥମ ଶିଶୁଟିଏ ଜନ୍ମହୁଏ ଏବଂ ପ୍ରଥମଥର ପାଇଁ ହସେ ସେ ହସଟି ହଜାର ହଜାର ଖଣ୍ଡରେ ବିଭକ୍ତ ହୋଇ ଚତୁର୍ଦ୍ଦିଗରେ ଖେଳେଇ ହୋଇଯାଏ ଏବଂ ସେଥିରୁ ହିଁ ପରୀମାନଙ୍କ ଜନ୍ମ । ତେଣୁ ପ୍ରତ୍ୟେକ ବାଳକ ବାଳିକା ପାଇଁ ଅନ୍ତ କମ୍‌ରେ ଗୋଟିଏ ପରୀ ରହିଥିବା କଥା ।"

"ରହିଥିବା କଥା ? କଣ ନାହାନ୍ତି ?"

"ନା, କାରଣ ଆଜକାଲି ପିଲ୍‌ମାନେ ଏତେ ବୁଦ୍ଧିମାନ ହେଲେଣି ଏବଂ ଏତେ ବିଷୟରେ ଜାଣିଲେଣି ଯେ ପରୀମାନେ ଅଛନ୍ତି ବୋଲି ସେମାନେ ବିଶ୍ୱାସ କରନ୍ତି ନାହିଁ ଏବଂ ଗୋଟିଏ ପିଲ୍ ଯେତେବେଳେ ଥରେ କହେ ଯେ ମୁଁ ପରୀମାନେ ଅଛନ୍ତି ବୋଲି ବିଶ୍ୱାସ କରେ ନାହିଁ ସେତେବେଳେ କେଉଁଠି ନା କେଉଁଠି ଗୋଟିଏ ପରୀ ଖସିପଡ଼ି ମରିଯାଏ ।"

"ସତେ ?"

ପିଟର ଭାବିଲା ସେ ଦୁହେଁ ପରୀମାନଙ୍କ ବିଷୟରେ ଅନେକ କଥା-ବାର୍ତ୍ତା ହେଲେଣି । ହଠାତ୍ ତାକୁ ଏଇ ପରୀକଥାରୁ ଘୁଙ୍ଗୁରପରୀ କଥା ମନେପଡ଼ିଲା । ଭାବିଲା ଘୁଙ୍ଗୁରପରୀ ତ କଣ ଭାରି ଚୁପ୍‌ଚାପ ହୋଇ ବସିଛି । ଏପରି ଭାବି ସେ ୱେଣ୍ଡିକୁ ପଚାରିଲା, "ଘୁଙ୍ଗୁରପରୀ କେଉଁଠି ବସିଛି ?" ତା'ପରେ ସେ ଘୁଙ୍ଗୁର ଶବ୍ଦ କେଉଁଠୁ ଆସୁଥିବା ଶୁଣି-ପାରିଲା ଏବଂ ତାର ଗୁଣ୍ଡଟି ଯେଉଁ ଆଲମାରି ଭିତରେ ଥିଲା ପିଟର ସେଇଟିକୁ ଖୋଲିଦେଲା । ଘୁଙ୍ଗୁରପରୀ ତା'ଭିତରୁ ବାହାରି ଆସି ରାଗରେ ଖୁବ୍ ଚିତ୍କାର କଲା ।

ପିଟର୍ ତାକୁ ଆଲମାରି ଭିତରେ ଭୁଲରେ ବନ୍ଦ କରିଦେଇଥିବାରୁ ପରୀଟି ତା'ଉପରେ ଖୁବ୍ ରାଗି ତାର କୁନି କୁନି ହାତରେ ପିଟର୍‌କୁ ମାରିବାକୁ ଲାଗିଲା । ପିଟର ଦୁଃଖରେ ସହିତ କହିଲା, "ମୁଁ କେମିତି

ଜାଣିବ ଯେ ତୁ ତା' ଭିତରେ ରହିଯାଇଛୁ ?'' ଘୁଙ୍ଗୁରପକ୍ଷୀ ରାଗରେ ସେ ଘରସାରା ଖାଲି ଡେଉଁଥାଏ ।

ୱେଣ୍ଡି ପିଟର୍‌କୁ କହିଲା, ''ଯଦି ଏହି ପକ୍ଷୀଟି ସ୍ଥିରହୋଇ କିଛି ସମୟ ଠିଆ ହୁଅନ୍ତା ତେବେ ମୁଁ ତାକୁ ଟିକିଏ ଭଲ କରି ଦେଖନ୍ତି ।'' କିନ୍ତୁ ଏକଥା ଶୁଣି ଘୁଙ୍ଗୁରପକ୍ଷୀକୁ ଟିକିଏ ଲାଜ ଏବଂ ସଙ୍କୋଚ ଲାଗିଲା । ସେ ଯାଇ ଜେଜେବାପାଙ୍କ ଘଣ୍ଟା ପଛରେ ଲୁଚିଗଲା । ୱେଣ୍ଡି ଜାଣିପାରିଲା ଯେ ଘୁଙ୍ଗୁରପକ୍ଷୀ ତାକୁ ଲାଜ କରୁଛି । ତେଣୁ ସେ ପିଟର୍ ସାଙ୍ଗରେ ପୁଣି କଥାବାର୍ତ୍ତା କରିବା ଆରମ୍ଭ କରିଦେଲା । ତାକୁ ପଚାରିଲେ, ''ପିଟର୍ ! ତୁମେ ଯଦି ଆଜକାଲି ପରୀମାନଙ୍କ ସାଙ୍ଗରେ ରହୁନାହିଁ ତେବେ ରହୁଛ କେଉଁଠି ?''

''ମୁଁ ଆଜକାଲି ହଜିଯାଇଥିବା ପିଲାମାନଙ୍କ ସାଙ୍ଗରେ ରହୁଛି ।''

''ସେମାନେ ପୁଣି କିଏ ?''

ଯେଉଁ ଛୋଟ ଛୁଆଗୁଡ଼ିକ ଆୟାମାନେ ଅନ୍ୟମନସ୍କ ଥିବା ସମୟରେ ତାଙ୍କ ଠେଲାଗାଡ଼ିରୁ ପଡ଼ିଯାଇଥାନ୍ତି ଏବଂ ସେପରି ଶିଶୁଙ୍କୁ ଯଦି ସାତଦିନ ଭିତରେ ତାଙ୍କ ବାପା, ମା ଫେରାଇ ନ ନଅନ୍ତି ତେବେ ଏକ ଅଜଣା ରାଇଜକୁ ସେମାନଙ୍କୁ ପଠାଇ ଦିଆଯାଏ ଏବଂ ମୁଁ ହେଉଛି ସେମାନଙ୍କ ନେତା ।''

''ତୁମେ ତାହାହେଲେ ଭାରି ମଜାରେ ଅଛ । କିନ୍ତୁ ପିଟର୍ ତୁମେ ଆମ ଘରକୁ କାହିଁକି ଆସିଲ ?''

''ତୁମ ମା, ତୁମମାନଙ୍କୁ ଶୁଆଇବା ସମୟରେ ଯେଉଁ ଗପ କହନ୍ତି ମୁଁ ତାହା ଶୁଣିବା ପାଇଁ ଆସିଥିଲି । ମୁଁ ଓ ଅନ୍ୟ ହଜିଯାଇଥିବା ଛୁଆମାନେ କେହିହେଲେ କିଛି ଗପ ଶୁଣିନାହୁଁ ।''

ପିଟର୍ ତା'ପରେ ୱେଣ୍ଡିକୁ ତା'ଜୀବନର ଆହୁରି ଅନେକ ଘଟଣା ବର୍ଣ୍ଣନାକରି କହିଲା । ଥରେ କିପରି ସେ ନେତା ହୋଇ,

ଅନ୍ୟପିଲ୍ମାନଙ୍କୁ ସାଙ୍ଗରେ ଧରି ତାଙ୍କ ବିରୋଧୀ ଦଳର ନିଷ୍ଠୁର ଜଳଦସ୍ୟୁ ଓ ହିଂସ୍ରଜନ୍ତୁମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲ୍ । ସେମାନେ କପରି ସମୁଦ୍ରରୁ ବାଲିବନ୍ଧ ଦ୍ୱାରା ଅଲଗା ହୋଇଥିବା ହ୍ରଦମାନଙ୍କରେ ଗାଧୋଇ ମଜା କରନ୍ତି ଏବଂ ସେ ହ୍ରଦରେ କପରି ସୁନ୍ଦର ସୁନ୍ଦର ଜଳପକ୍ଷୀ ଦଳସାରି ପହଁରୁଥାନ୍ତି ଇତ୍ୟାଦି ।

"ମୁଁ ଏବେ ଯାଉଛି । ଅନ୍ୟ ପିଲ୍ମାନେ ମୋ ଅପେକ୍ଷାରେ ବସିଥିବେ । ସେମାନେ ଗପର ଶେଷଭାଗ ଶୁଣିବା ପାଇଁ ଖୁବ୍ ଆତୁର ଭାବେ ଚାହିଁ ରହିଥିବେ । ଯେଉଁ କାହାଣୀରେ କି ରାଜପୁତ୍ରଟି କାଚ ଚପଲ ପିନ୍ଧିଥିବା ଝିଅଟିକୁ ଶେଷ ସୁଦ୍ଧା ପାଇପାରିନଥିଲ୍ ।"

"ପିଟର୍ ଦୟାକରି ତୁମେ ଏତେ ଶୀଘ୍ର ଯାଅ ନାହିଁ । ତୁମେ ଯଦି ନ ଯିବ ତେବେ ମୁଁ ତୁମକୁ ଅନେକ ଗପ ଶୁଣେଇବି ।" ୱେଣ୍ଡି ଖୁବ୍ ଅନୁରୋଧ କରି ପିଟର୍କୁ କହିଲ୍ ।

ତାର କଣ୍ଠସମୟୁପରେ ପିଟର୍ ଟିକଏ ଭାବି କହିଲ୍, "ମତେ ଗୋଟିଏ ଭଲ ଉପାୟ ଦିଶିଲ୍, ତୁମେ ଆମ ସାଙ୍ଗେ ଆମ ଅଜଣା ରାଇଜକୁ ଚାଲିଆସ । ତୁମେ ସେଠାରେ ଆମ ସମସ୍ତଙ୍କୁ କାହାଣୀ ଶୁଣାଇବ ଏବଂ ଆମର ଲୁଗାପଟା ମରାମତି କରିଦେବ । ରାତି ହେଲେ ଆମକୁ ନେଇ ଶେଯ ଭିତରେ ଶୁଆଇଦେବ । ଭାରି ଭଲ ହେବ । ସେଠାରେ ସବୁ ପିଲ୍ମାନେ ମା'ର ସ୍ନେହ ପାଇବାପାଇଁ ଆତୁର । ୱେଣ୍ଡି ଦୟାକରି ତୁମେ ମୋ ସାଙ୍ଗରେ ଉଡ଼ି ଚାଲ ।" ପିଟର୍ ବହୁତ ବିନୟର ସହିତ ୱେଣ୍ଡିକୁ ଅନୁରୋଧ କଲ୍ । ୱେଣ୍ଡି ମଧ୍ୟ ପିଟର୍ର ନିମନ୍ତ୍ରଣପାଇ ଆନନ୍ଦରେ ବିଭୋର ହୋଇ କହିଲ୍, "ଖୁବ୍ ମଜା ହୁଅନ୍ତା, ନା ? କିନ୍ତୁ ପିଟର୍ ତୁମେ କଣ ମୋ ଭାଇ ଜନ୍ ଓ ମାଇ-କେଲ୍କୁ ମଧ୍ୟ ଉଡ଼ିବା ଶିଖେଇଦେବ ।" ପିଟର୍ ଏ ବିଷୟରେ

ବିଶେଷ ଆଗ୍ରହ ନଦେଖାଇ କହିଲା, "ତୁମେ ଯଦି କହିବ ତେବେ ମୁଁ ସେମାନଙ୍କୁ ମଧ୍ୟ ଉଡ଼ିବା ଶିଖେଇଦେବି ।"

ୱେଣ୍ଡି ତା'ପରେ ଜନ୍ ଓ ମାଇକେଲ୍‌କୁ ଉଠେଇ ଦେଲା ଏବଂ ସେମାନଙ୍କୁ ଯେତେବେଳେ ଅଜଣା ରାଇଜରେ ଥିବା ପରୀ ଓ ଜଳଦସ୍ୟୁ-ମାନଙ୍କ ବିଷୟରେ କହିଲା ସେମାନେ ମଧ୍ୟ ତା' ସହିତ ଯିବା ପାଇଁ ଆତୁରହୋଇ ଉଠିଲେ ।

ତା'ପରେ ସମସ୍ତେ ପିଟର୍ କିପରି ଘର ଭିତରେ ଉଡ଼ୁଛି ଦେଖି ତା'ପରି ଉଡ଼ିବାକୁ ଚେଷ୍ଟାକଲେ । କିନ୍ତୁ ପ୍ରଥମେ ପ୍ରଥମେ ସେମାନେ ପିଟର୍‌ପରି ଉଡ଼ିପାରିଲେନାହିଁ । ସେମାନଙ୍କ ମୁଣ୍ଡ ଯାଇ କେତେ-ବେଳେ କାନ୍ଥରେ ତ କେତେବେଳେ ଛାତରେ ପିଟି ହେଉଥାଏ । ଏହିପରି ସେମାନେ ଘରଭିତରେ ଉଡ଼ିବା ଶିଖୁଥାନ୍ତି । ହଠାତ୍ ମାଇକେଲ୍ ଚିତ୍କାରକରି ଉଠିଲା, "ମତେ ଉଡ଼ିବା ଆସିଗଲା ।" କିନ୍ତୁ ପ୍ରକୃତରେ ସେ ସେତେବେଳେ ସମ୍ପୂର୍ଣ୍ଣରୂପେ ଉପରେ ଉଡ଼ିପାରୁ-ନଥାଏ । ମାଇକେଲ୍ କିନ୍ତୁ ଖୁସିରେ ଚିତ୍କାର କରୁଥାଏ "ମତେ ଦେଖ, ମତେ ଦେଖ, ମୁଁ କିପରି ଉଡ଼ୁଛି ।"

ପିଟର୍ ଦେଖିଲା ସେମାନେ ସେତେ ଭଲରୂପେ ଉଡ଼ିପାରୁନାହାନ୍ତି । ତେଣୁ ସେ କିଛି ପରୀଧୂଳି ସେମାନଙ୍କ ଦେହରେ ବୋଳିଦେଲା । ବର୍ତ୍ତମାନ ସେମାନେ ପିଟର୍ ଭଳି ଅତି ସହଜରେ ଏ ଘରୁ ସେ ଘରକୁ ଉଡ଼ି ଯାଇପାରିଲେ ।

"ଘୁଙ୍ଗୁର ପରୀ ଆମକୁ ରାସ୍ତା ଦେଖା ।" ପିଟର୍ ଘୁଙ୍ଗୁରକୁ ଡାକି କହିଲା ଏବଂ ସମସ୍ତେ ପରୀ ପଛରେ ଉଡ଼ି ଚାଲିଲେ । ୱେଣ୍ଡି ଓ ତା'ଦୁଇ ଭାଇ ଖୁବ୍ ସହଜ ଭାବେ ଉଡ଼ୁଥାନ୍ତି । ସତେ ଯେପରି ସେମାନେ ଗୋଟିଏ କୁହୁକ ଗାଲିଚା ଉପରେ ବସି ଉଡ଼ୁଛନ୍ତି ।

ଏବେ କୁକୁର ନାନା ଘର ପଛପଟେ ବନ୍ଧା ହୋଇ ଖୁବ୍ ଜୋର୍‌ରେ ଭୁକୁଥାଏ । ସେ ଜାଣିପାରୁଥିଲା ଯେ ପିଲାମାନେ ଆଜି ଦୁଷ୍ଟାମି କରୁଛନ୍ତି । ଶେଷରେ ସେ ତା' ବେକରେ ବନ୍ଧା ହୋଇଥିବା ଚେନ୍‌ଟି ଛିଣ୍ଡାଇ ଶ୍ରୀ ଓ ଶ୍ରୀମତୀ ଡାର୍ଲିଙ୍ଗଙ୍କୁ ଉଠାଇବା ପାଇଁ ତାଙ୍କ ବଖରାକୁ ଗଲା । ନାନାର ପାଟି ଶୁଣି ସେମାନେ ମଧ୍ୟ ଖୁବ୍ ଡରିଗଲେ ଏବଂ ଆସି ଦେଖନ୍ତି ତ ପିଲାଙ୍କ ଶୋଇବା ଘରଟି ଖାଲି ପଡ଼ିଛି । ପିଲାମାନେ ତାଙ୍କ ରାତି ଶୋଇବା ପୋଷାକରେ ହିଁ ପିଟର୍ ପାନ୍ ଓ ପରୀ ସାଙ୍ଗରେ ଉଡ଼ି ଚାଲିଯାଇଥାନ୍ତି । ଶ୍ରୀମତୀ ଓ ଶ୍ରୀ ଡାର୍ଲିଙ୍ଗ ଜାଣିଲା ବେଳକୁ ବହୁତ ଡେରି ହୋଇଯାଇଥିଲା । ଅବଶ୍ୟ ସେମାନେ ବହୁତ ଖୋଜାଲୋଡ଼ା କଲେ ମାତ୍ର ସମସ୍ତ ବୃଥା ।

ପିଲାମାନେ ଅଜଣା ରାଇଜକୁ ଉଡ଼ିଯାଇଥାନ୍ତି । ସେଠାରେ ପହଞ୍ଚିବା ପାଇଁ ବହୁତ ରାସ୍ତା ପାର କରିବାକୁ ପଡ଼େ । ତାହା ପ୍ରକୃତରେ ଗୋଟିଏ ନିର୍ଜନ ଦ୍ୱୀପ । ସନ୍ଧ୍ୟାବେଳଟି ସେଠାରେ ଖୁବ୍ ମନୋରମ ଏବଂ ରାତିରେ ନୀଳ ଆକାଶରେ ଅସଂଖ୍ୟ ତାରା ଝଟକିଇ ହୋଇ ପଡ଼ନ୍ତି । ପିଟର୍ ପାନ୍ ୱେଣ୍ଡିର ହାତଧରି ଅଜଣାରାଇଜକୁ ଉଡ଼ାଇ ନେଇଗଲା ।

## ଅଜଣା ରାଇଜ

ନିଖୋଜ ପିଲାମାନେ ଅଜଣା ରାଇଜର ଏକ ଘଞ୍ଚଅରଣ୍ୟ ମଝିରେ ଯାଇ ରହୁଥିଲେ । ସେତେବେଳକୁ ଶୀତଋତୁ ହୋଇଥାଏ । ପିଲାମାନେ ଯେଉଁ ହ୍ରଦରେ ପହଁରନ୍ତି ସେ ହ୍ରଦଟି ଉପରେ ବରଫର

ଏକପରସ୍ତ ଜମି ଯାଇଥିଲା । ଗଛପତ୍ରଗୁଡ଼ାକ ଥଣ୍ଡା ହୋଇ ଶୀତରେ ଥରୁଥାନ୍ତି । ବଣର ବାଘ, ଭାଲୁ, କୋକଶିଆଳୀ ପ୍ରଭୃତି ହିଂସ୍ରଜନ୍ତୁମାନେ ଶୀତର ପ୍ରକୋପ ସହିନପାରି ଦୂରରେ ଗର୍ଜନ କରୁଥାନ୍ତି । କିନ୍ତୁ ଜଳଦସ୍ୟୁମାନେ ଶୀତକୁ ଭୟ ନକରି ହ୍ରଦ ଉପରେ ଡଙ୍ଗାରେ ବସି କିଛି ଖରାପ କାମ କରିବା ଉଦ୍ଦେଶ୍ୟରେ ବୁଲୁଥାନ୍ତି । ପିଲାମାନଙ୍କ ସାଙ୍ଗ ଲୋହିତଭାରତୀୟମାନେ ମଧ୍ୟ ବଣ ମଝିରେ ଯାଇ କୁଡ଼ିଆ କରି ଲୁଚି ଛପି ରହିଥାନ୍ତି । ଜଳଦସ୍ୟୁମାନଙ୍କୁ ତାଙ୍କର ବଡ଼ ଡର ।

ହଜିଯାଇଥିବା ପିଲାମାନେ ଭାଲୁଚମରେ ତିଆରି ପୋଷାକ ପିନ୍ଧିଥାଆନ୍ତି । ସେ ପୋଷାକରେ ସେମାନେ ଖୁବ୍ ଗୋଲ୍‌ଗୋଲ୍ ଏବଂ ଲୁମୁଲୁମିଆ ଦେଖାଯାଉଥିଲେ । ଯଦି ସେମାନେ କେତେବେଳେ କେମିତି ଖେଳିଲା ବୁଲିଲା ବେଳେ ପଡ଼ିଯାଉଥିଲେ ତେବେ ବଲ୍‌ଭଳି ଗଡ଼ିଯାଉଥିଲେ । ପିଟର୍ କେବେ ଫେରିବ ବୋଲି ସେମାନେ ଆତୁର ହୋଇ ରହିଁ ବସିଥାନ୍ତି । ଏହି ପିଲା ଦଳରେ ଛଅଜଣ ପିଲା ଥିଲେ । ସେମାନଙ୍କ ନାଁ ଖୁବ୍ ଅଦ୍ଭୁତ, ଯଥା—ଟିଟୁ, ମିଣ୍ଟୁ, ବୁଟୁ, କଟୁ । ଏହାଛଡ଼ା ଆଉ ଦୁଇଟି ଯାଆଁଳା ଭାଇ ଥିଲେ । ସେମାନଙ୍କର କିଛି ନାଁ ରଖାଯାଇ ନ ଥିଲା । କାରଣ ଯାଆଁଳା ହେବାରୁ ଏକା ଭଳି ଦେଖାଯାଉଥାନ୍ତି । ତେଣୁ ଚିହ୍ନିବା କଷ୍ଟ ହେଉଥିଲା । ସେ ଦୁଇଜଣଙ୍କୁ 'ଯାଆଁଳା' ବୋଲି ହିଁ ଡକାଯାଉଥିଲା ।

ପିଲାମାନେ ଜଳଦସ୍ୟୁ ଏବଂ ହେଟାବାଘ ପ୍ରଭୃତିଙ୍କ ଡରରେ ଯାଇ ଝୁଷୁରିଙ୍କ ଭଳି ମାଟିତଳେ ଗାତ କରି ତା' ଭିତରେ ରହୁଥିଲେ ଏବଂ ସେହି ଗାତ ଭିତରୁ ସମସ୍ତେ ନିଜ ନିଜ ପାଇଁ ଗୋଟିଏ ଗୋଟିଏ ଅଲଗା ସିଡ଼ି ତିଆରି କରିଥିଲେ । ସେ ସିଡ଼ିଗୁଡ଼ିକ ପାଖରେ ଥିବା ବିଭିନ୍ନ ଗଛର କୋରଡ଼ ସାଙ୍ଗେ ଯୋଡ଼ ହୋଇଥାଏ । ଯା' ଫଳରେ

ଥରେ ପିଲାମାନେ ସମସ୍ତେ ମିଶି ମାଟି ଉପରେ ଖେଳୁଥାନ୍ତି । ଏହି ସମୟରେ ହଠାତ୍ ଜଳଦସ୍ୟୁମାନଙ୍କର ଆସିବା ଶବ୍ଦ ସେମାନେ ଶୁଣିପାରିଲେ । ସାଙ୍ଗେସାଙ୍ଗେ ପିଲାମାନେ ଖେଳ ବନ୍ଦ କରି ଜଳଦସ୍ୟୁମାନେ ସେମାନଙ୍କ ଆଡ଼କୁ ମାଡ଼ି ଆସିବା ପୂର୍ବରୁ ଗଛର କୋରଡ଼ ଭିତର ଦେଇ ମାଟିତଳ ଘରେ ପହଞ୍ଚିଗଲେ ।

ଜଳଦସ୍ୟୁମାନେ ସାଧାରଣତଃ ଖୁବ୍ ନଷ୍ଟ ଚରିତ୍ରର ହୋଇଥାନ୍ତି । ସେମାନେ କେବଳ ଯେ ପିଟର୍ ଦଳର ଶତ୍ରୁ ଥିଲେ ତାହା ନୁହେଁ, ତାଙ୍କୁ ସମସ୍ତେ ଭୟ କରୁଥିଲେ । 'ଜେମ୍ସ ହୁକ୍' ନାମକ ଜଳଦସ୍ୟୁ ସେ ଦଳର ନେତା ହୋଇଥାଏ । ସେ ତାଙ୍କ ଦଳରେ ସବୁଠାରୁ ବେଶି ଦୁଷ୍ଟ । ତାର ଚେହେରାଟି ମଧ୍ୟ ତା' ପ୍ରକୃତି ଭଳି ଖୁବ୍ ଭୟଙ୍କର । ମଧ୍ୟରାତ୍ରିର ଅନ୍ଧାର ଭଳି ତା'ର ଅନିଷ୍ଟକାରୀ ଆଖି ଦୁଇଟି ଖୁବ୍ କଳା । ମୁହଁଟାସାକ କଟା ଦାଗ ପଡ଼ିଥାଏ । ଗାଲ୍‌ଦୁଇଟି ଝାଆଁ ସାବାଳରେ ପୂର୍ଣ୍ଣ । ସେ ବାଳଗୁଡ଼ିକ ନାଗଫେଣୀ ଗଛର କଣ୍ଟା ଭଳି ଖୁବ୍ ମୁନିଆ ହୋଇଥାଏ ଏବଂ ମୁଣ୍ଡର ବାଳଗୁଡ଼ିକ ତେଲିଆ ତଥା ମୋଡ଼ ମୋଡ଼ ହୋଇ ପିଠିରେ ଲମ୍ବିଥାଏ । ଦୂରରୁ ଦେଖିଲେ ମନେହୁଏ ସତେ ଯେପରି କଳାରଙ୍ଗର ମହମବତୀଗୁଡ଼ାଏ ଝୁଲୁଛି । କିନ୍ତୁ ନିଃସନ୍ଦେହରେ କୁହାଯାଇପାରେ ଯେ ତା ଶରୀରର ସବୁଠାରୁ ଭୟଙ୍କର ଅଂଶଟି ହେଲା ତାର ଡାହାଣ ହାତରେ ଲୁହା ପଞ୍ଝାଟି । ପିଟର୍ ଥରେ ଲଢ଼େଇରେ ତାର ଏହି ଦକ୍ଷିଣ ହାତଟିକୁ କାଟି ସେ ବାଟେ ଯାଉଥିବା ଗୋଟିଏ କୁମ୍ଭୀରକୁ ଖାଇବାକୁ ଦେଇ ଦେଇଥିଲା । ଜେମ୍ସ ତାର ସେହି ହାତରେ ଗୋଟିଏ ଲୁହାର ଆଙ୍କୁଶ ଲଗାଇ ଥିବାରୁ ଜେମ୍ସ ହୁକ୍ ବୋଲି ପରିଚିତ ହେଉଥାଏ ।

ଜେମ୍ସ ହୁକ୍ ଠାରୁ ଅଧିକ ଦୁଷ୍ଟ ପ୍ରକୃତିର ଜଳଦସ୍ୟୁ ବୋଧହୁଏ ଦୁନିଆରେ ଆଉ କେହି ନ ଥିବେ । ତାକୁ ସାଧାରଣତଃ ସମସ୍ତେ

ଭୟ କରନ୍ତି । ଏପରିକି ତା'ଦଳରେ ଥିବା ଅନ୍ୟ ସାଥି ଜଳଦସ୍ୟୁ-ମାନେ ମଧ୍ୟ ତାକୁ ପ୍ରାଣରେ ଭୟ କରନ୍ତି । ତେଣୁ ଏଥିରେ କିଛି ଆଶ୍ଚର୍ଯ୍ୟ ହେବା ବିଷୟ ନାହିଁ ଯେ ସେ ଆସୁଥିବା ଦେଖି ପିଲାମାନେ, ଠେକୁଆ ତା' ଗାତ ଭିତରେ ପଶିଲା ପରି ଭୟରେ, ମାଟିତଳ ଘରେ ପଶିଗଲେ । ପିଟର୍ ଜେମ୍‌ସ ହୁକ୍‌ର ହାତଟିକୁ କାଟିଦେବା ପରଠାରୁ ପ୍ରତିଶୋଧପରାୟଣ ସେ ଦସ୍ୟୁ ପିଟର୍‌କୁ ଖୋଜି ବୁଲୁଥାଏ । ଯେଉଁ କୁମ୍ଭୀରଟି ଜେମ୍‌ସ ହୁକ୍‌ର ହାତଟିକୁ ଖାଇଥିଲା, ତାକୁ ସେ ମାଂସ ଖୁବ୍ ମିଠା ଲାଗିଥିଲା । ତେଣୁ ସେ ମଧ୍ୟ ଜେମ୍‌ସକୁ ଖାଇବା ପାଇଁ ସର୍ବଦା ତା'ର ପିଛା କରୁଥାଏ । କୁମ୍ଭୀରଟି ଥରେ ଗୋଟିଏ ଘଣ୍ଟା ଗିଳି ଦେଇଥିଲା । ସେହି ଘଣ୍ଟାଟି କୁମ୍ଭୀର ପେଟ ଭିତରେ ରହି ସବୁବେଳେ ଟିକ୍ ଟିକ୍ ଶବ୍ଦ କରୁଥାଏ । ତେଣୁ ଜଳଦସ୍ୟୁ ଜେମ୍‌ସ ଦୂରରୁ ସେ ଶବ୍ଦ ଶୁଣି କୁମ୍ଭୀରଟା ତା' ପଛରେ ଆସୁଛି ବୋଲି ଜାଣିପାରି ସେ ସ୍ଥାନ ଛାଡ଼ି ଚାଲିଯାଉଥାଏ । ଏଣେ ପିଟର୍, ନିଖୋଜ ପିଲାମାନଙ୍କୁ ସଂଗଠିତ କରି ତାଙ୍କୁ ଯୁଦ୍ଧକୌଶଳ ଶିକ୍ଷା ଦେଇ ଅଜଣା ଭବିଷ୍ୟତ ପାଇଁ ପ୍ରସ୍ତୁତ ହେଉଥାଏ ।

ଜଳଦସ୍ୟୁ ଜେମ୍‌ସ ସେଦିନ ଗୋଟିଏ ମସ୍ତବଡ଼ ଜଙ୍ଗଲୀ ଛତୁ ଉପରେ ବସି ତା'ର ଅନ୍ୟ ସାଥିମାନଙ୍କ ସାଙ୍ଗରେ ପିଟର୍‌ର ଦଳ ଉପରେ ପ୍ରତିଶୋଧ ନେବାର ଉପାୟ ଆଲୋଚନା କରୁଥାଏ । ହଠାତ୍ ତାକୁ ଛତୁଟି ଖୁବ୍ ଗରମ ଲାଗିଲା । ସେ ସାଙ୍ଗେ ସାଙ୍ଗେ ତଳକୁ ଡେଇଁପଡ଼ି କହିଲା, "ଓହୋ ! ଏ ଛତୁଟି ଗରମ ଲୁହା ଭଳି ତାତୁଛି ।"

ଅନ୍ୟ ଜଳଦସ୍ୟୁମାନେ ସେହି ଛତୁଟି କାହିଁକି ଗରମ ହୋଇଗଲା ଜାଣିବା ପାଇଁ କାରଣ ଖୋଜିଲେ ଏବଂ ଛତୁଟିକୁ ତା' ମୂଳ ସହିତ ଉପାଡ଼ିବା ପାଇଁ ବଳପ୍ରୟୋଗ କଲେ । ସେମାନେ ଟିକିଏ ଟାଣିଛନ୍ତି କି ନାହିଁ ଛତୁଟି ଉପୁଡ଼ି ଚାଲିଆସିଲା । ପ୍ରକୃତରେ ସେହି ଛତୁର

ମୂଳ ନଥିଲା । ତା'ପରେ ସେ ବାଟେ କଳା କଳା ଧୂଆଁ ଉପରକୁ ଆସିବାକୁ ଲାଗିଲା । ଜଳଦସ୍ୟୁମାନେ ଆଶ୍ଚର୍ଯ୍ୟ ହୋଇ ମୁହଁକୁ ମୁହଁ ଚାହିଁ କହିଲେ, "ଧୂଆଁ ନଳା ।"

ପ୍ରକୃତରେ ଜଳଦସ୍ୟୁମାନେ ଅଶୁନକ ପିଲାମାନଙ୍କର ଗୁପ୍ତ-ଘରଟିର ସନ୍ଧାନ ପାଇଗଲେ । ସେହି ଧୂଆଁ ନଳା ବାଟେ ସେମାନେ ପିଲାମାନଙ୍କର ପାଟି ମଧ୍ୟ ଶୁଣିପାରିଲେ । ଜେମ୍ସ ହୁକ୍ ଜାଣିପାରିଲା ଯେ ପିଲାମାନେ ଏହି ମାଟିତଳେ ଘରକରି ନିରାପଦରେ ଲୁଚିରହିଛନ୍ତି ।

ଜେମ୍ସର ମୁଣ୍ଡରେ ହଠାତ୍ ଗୋଟିଏ କ୍ରୁର ଭାବନା ଆସି ଜୁଟି ଗଲା । ସେ ଠିକ୍‌କଲା ଯେ, ସୁନ୍ଦର ଭାବେ ସଜା ହୋଇଥିବା ଗୋଟିଏ ସୁସ୍ୱାଦୁ ପିଠା ତିଆରି କରିବ ଏବଂ ତା ଭିତରେ ବିଷ ଭର୍ତ୍ତି କରି ପିଲାମାନଙ୍କ ପାଖକୁ ପଠାଇବ । ପିଠାଟି ନଡ଼ିଆରେ ତିଆରି ହେବ ଏବଂ ତା' ଉପରେ ନାଲିଆ, ନେଳିଆ ମିଠା ରଙ୍ଗ ବୋଳା ହୋଇ ସଜା ହେବ; ଯାହା ଫଳରେ ମା'ନଥିବା ଏହି ପିଲାମାନେ ଏପରି ସୁସ୍ୱାଦୁ ଓ ସୁନ୍ଦର ପିଠା ଦେଖି ଲୋଭ ସମ୍ଭାଳି ନପାରି ପିଠା ସହିତ ବିଷ ଖାଇ ମରିଯିବେ । ଜେମ୍ସ ହୁକ୍‌ର ସହକାରୀ ସ୍ମୀ ନେତାଙ୍କର ଏହି ଚତୁର ବୁଦ୍ଧିକୁ ଖୁବ୍ ପ୍ରଶଂସାକରି ଉତ୍ସାହର ସହିତ ଶୁଣୁଥାଏ ।

ସ୍ମୀ ତା'ପରେ ଆନନ୍ଦର ସହିତ କହିଲା, "ବାଃ, ପ୍ରତିଶୋଧ ନେବା ପାଇଁ ଏତେ ସୁନ୍ଦର ଉପାୟ ମୁଁ ଆଉ କେବେ ଶୁଣିନଥିଲି ।" ଶତ୍ରୁ-ମାନଙ୍କର ନିଶ୍ଚିତ ମୃତ୍ୟୁକଥା ଚିନ୍ତାକରି ଜେମ୍ସ ଓ ତାର ସହକାରୀ ଦୁହେଁ ଖୁବ୍ ଖୁସି ହୋଇ ଆନନ୍ଦରେ ଗୀତଗାଇ ନାଚିବାରେ ଲାଗିଲେ । କିନ୍ତୁ ଦୁର୍ଭାଗ୍ୟକୁ ସେମାନଙ୍କର ଗୋଟିଏ ଗୀତ ସରିଛି କି ନାହିଁ କୁମ୍ଭୀର ପେଟରେ ଥିବା ଘଣ୍ଟାଟିର ଟିକ୍ ଟିକ୍ ଶବ୍ଦ ଶୁଣାଗଲା । ଜେମ୍ସ ଭୟରେ ପାଟିକରି କହିଲା, "କୁମ୍ଭୀର" ଏବଂ ଅଣ-ନିଃଶ୍ୱାସୀହୋଇ ଆଖିପିଛୁଳାକେ ବଣଭିତରକୁ ଧାଇଁ ଚାଲିଗଲା ।

ଯଦି ଆଉ ଗୋଟିଏ ମୁହୂର୍ତ୍ତ ଡେରି କରିଥାନ୍ତା ତେବେ କୁମ୍ଭୀର ତାକୁ ଅତି ଆନନ୍ଦରେ ଖାଇଥାନ୍ତା ।

ଜଳଦସ୍ୟୁମାନେ ଚାଲିଯିବାପରେ ପିଲମାନେ ପୁଣି ତାଙ୍କ ମାଟିତଳ ଘରୁ ବାହାରି ଆସି ଉପରେ ଖେଳ ବୁଲିଲେ । ବର୍ତ୍ତମାନ ସେମାନଙ୍କ ପାଇଁ ଯେତେ ଯେପରି ରାତିର ଘୋର ଅନ୍ଧକାର ଉଭେଇ ଯାଇ ସକାଳର ସୁନେଲି କିରଣ ବିଚ୍ଛେଇ ହୋଇଯାଇଥିଲା । ଯେଉଁ ରାକ୍ଷସ ସେମାନଙ୍କୁ ଖାଇବାକୁ ଆସିଥିଲା ସେ ତାର ନିଜ ପ୍ରାଣ ବଞ୍ଚାଇ ଦୌଡ଼ି ଚାଲିଯାଇଥିଲା । ହଠାତ୍ ସେମାନେ ଆକାଶରେ ଗୋଟିଏ ଅତି ସୁନ୍ଦର ଧଳା ପକ୍ଷୀଟିଏ ଉଡ଼ୁଥିବା ଦେଖିପାରିଲେ ।

ଯେଉଁ ପିଲାଟିର ନାଁ ମିଣ୍ଟୁ ସେ ଧଳାପକ୍ଷୀଟି ଦେଖି ଚିହ୍ନି ନପାରି ତା' ସାଙ୍ଗମାନଙ୍କୁ ଆଶ୍ଚର୍ଯ୍ୟର ସହିତ ପଚାରିଲେ, "ଏହା କି ଜାତିର ପକ୍ଷୀ ବୋଲି ତୁମେମାନେ ଜାଣିଛ ?" ଟିଟୁ ନାମକ ପିଲାଟି କହିଲା "ମୁଁ ଜାଣିନି । କିନ୍ତୁ ଏ ପକ୍ଷୀଟି ଖୁବ୍ କ୍ଲାନ୍ତହୋଇ ସକେଇ ସକେଇ କାନ୍ଦୁଥିବା ଭଳି ଜଣାଯାଉଛି—ବୋଧହୁଏ ୱେଣ୍ଡି ।" ତା'ପରେ ହଠାତ୍ ଟୁଟୁ କହିଉଠିଲା, "ହଁ ହଁ ମୋର ମନେପଡ଼ିଲା, ଏପ୍ରକାର ପକ୍ଷୀମାନଙ୍କ ନାମ ୱେଣ୍ଡି ।"

କିଟୁ ତା'ପରେ ଆକାଶରେ ଉଡ଼ୁଥିବା ୱେଣ୍ଡି ଆଡ଼କୁ ହାତ ଦେଖାଇ କହିଲା, "ହେଇ ଦେଖ ସେ ପକ୍ଷୀଟି ଆମଆଡ଼କୁ ଉଡ଼ି-ଆସୁଛି । ସେତେବେଳକୁ ୱେଣ୍ଡି ଏହି ପିଲମାନଙ୍କର ମୁଣ୍ଡ ଉପରକୁ ଉଡ଼ି ଆସିଯାଇଥାଏ ଏବଂ ତା' ସାଙ୍ଗରେ ଝୁଙ୍ଗୁରପରୀ ମଧ୍ୟ ଥାଏ । ପ୍ରକୃତରେ ଝୁଙ୍ଗୁରପରୀ ୱେଣ୍ଡିକୁ ଭଲ ପାଉନଥାଏ । ତା' ମନରେ ୱେଣ୍ଡିପ୍ରତି ହିଂସା ହେଉଥିଲା । ସେ ରାସ୍ତାଯାକ ୱେଣ୍ଡିର ସାଙ୍ଗେ ସାଙ୍ଗେ ରହି ତାକୁ ଚିମୁଟୁଥାଏ ଏବଂ ଚିଡ଼ାଉଥାଏ ।

ପିଲାମାନେ ଘୁଙ୍ଗୁରପକ୍ଷୀକୁ ଦେଖି ନମସ୍କାର କଲେ ଏବଂ ଘୁଙ୍ଗୁର-ପକ୍ଷୀ ମଧ୍ୟ ସେମାନଙ୍କୁ ପ୍ରତିନମସ୍କାର ଜଣାଇ କହିଲା, "ପିଟର୍ ମୋ ହାତରେ ତୁମମାନଙ୍କ ପାଖକୁ ଗୋଟିଏ ଖବର ପଠାଇଛି । ସେ ଚାହେଁ ଯେ ତୁମେମାନେ ୱେଣ୍ଡିକୁ ମାରିଦିଅ ।"

ପିଲାମାନେ କେବେହେଲେ ପିଟର୍ ଦେବା ଆଦେଶକୁ ଅବମାନନା କରନ୍ତି ନାହିଁ । ସେ ଯାହା ଆଦେଶ ଦେଇଥାଏ ବିନାଦ୍ୱିଧାରେ ହିଁ ମାନିଯାଆନ୍ତି । ମିଣ୍ଟୁ ଏହା ଶୁଣି ଖୁବ ଖୁସି ହୋଇ ସାଙ୍ଗେ ସାଙ୍ଗେ ତା ଧନୁରେ ଶର ଯୋଡ଼ିଦେଲା । କିନ୍ତୁ ୱେଣ୍ଡି ତାର ଲକ୍ଷ୍ୟର ବାହାରକୁ ଚାଲିଯାଉଥିବାରୁ ଘୁଙ୍ଗୁରକୁ କହିଲା, "ଘୁଙ୍ଗୁର, ପକ୍ଷୀଟିକୁ ଠିକ୍ ଲକ୍ଷ୍ୟକର ଦେଉନ ।" ଏପରି କହି ଶରଟିକୁ ୱେଣ୍ଡି ଆଡ଼କୁ ପୁଣି ଲକ୍ଷ୍ୟକରି ମାରିଦେଲା । ଶରଟି ଯାଇ ୱେଣ୍ଡିର ଛାତିରେ ବାଜିଲା ଓ ୱେଣ୍ଡି ସିଧା ତଳେ ଆସି କଚାଡ଼ି ହୋଇପଡ଼ିଲା ।

## ୱେଣ୍ଡି ପାଇଁ ଘର

ମିଣ୍ଟୁ ଶର ମାରି ୱେଣ୍ଡିକୁ ତଳକୁ ଖସାଇଦେଇ ପକ୍‌କା ଶିକାରୀ ପାଣିରେ ଗୋଟିଏ ଗୋଡ଼ ତା' ଶରୀର ଉପରେ ରଖି ଠିଆହେଲା । ଅନ୍ୟ ପିଲାମାନେ ଗଛ ଉପରେ ଚଢ଼ି ବସିଥାନ୍ତି । ୱେଣ୍ଡି ତଳେ ପଡ଼ିଯିବା ଦେଖି ଗଛରୁ ଡେଇଁ ଆସି ସମସ୍ତେ ୱେଣ୍ଡିର ଚାରିପଟେ ଘେରି ଠିଆହେଲେ । ମିଣ୍ଟୁ ଗର୍ବର ସହିତ କହିଲା "ତୁମେମାନେ ବହୁତ ଡେରି କରିଦେଲ । ଦେଖ, ମୁଁ ଶର ମାରି ଏ ପକ୍ଷୀଟିକୁ ତଳକୁ ଖସାଇ ଦେଇଛି । ପିଟର୍ ଯେତେବେଳେ ଜାଣିବ ସେ ମୋତେ ବହୁତ ପ୍ରଶଂସା କରିବ । ଏ ପ୍ରଶଂସାରୁ ତୁମେମାନେ ବଞ୍ଚିତହେଲ ।

ପିଲମାନେ ଓ୍ୱେଣ୍ଡିକୁ ଘେରି ଚୁପ୍‌ଚାପ୍ ସ୍ତବ୍ଧ ଓ ଶଙ୍କିତ ହୋଇ ଠିଆ ହୋଇଥାନ୍ତି । ଘରଆଡ଼ ନିସ୍ତବ୍ଧ ହୋଇଯାଇଥାଏ । ସେତେବେଳେ ଯଦି ଓ୍ୱେଣ୍ଡିର ହୃତ୍‌ପିଣ୍ଡ ଚାଲୁଥାନ୍ତା ତାହେଲେ ସମସ୍ତେ ବୋଧହୁଏ ସେ ଶବ୍ଦ ମଧ୍ୟ ଶୁଣି ପାରିଥାନ୍ତେ ।

ଟିଟୁ ପ୍ରଥମେ କହିଲା, "ମୁଁ ଭାବୁଛି ଏ ଗୋଟିଏ ପକ୍ଷୀ ନୁହେଁ । ନିଶ୍ଚୟ ଗୋଟିଏ ଝିଅପିଲା ହୋଇଥିବ ।" ତା'ପରେ ବୁଟୁ କାନ୍ଦ କାନ୍ଦ ହୋଇ କହିଲା, "କି ଦୁଃଖର ବିଷୟ ! ଆମେ ପୁଣି ଓ୍ୱେଣ୍ଡିକୁ ମାରିଦେଲେ ।"

କିଟୁ ତା'ପରେ ଦୁଃଖପୂର୍ଣ୍ଣ ହୃଦୟରେ କହିଲା, "ପିଟର୍ ଭାଇ ଆମ ପାଇଁ ତାକୁ ଏତେ ଦୂରରୁ ନେଇ ଆସିଥିଲା ।" ଏହା କହି ସେ ଦୁଃଖ ସହିନପାରି ତଳେ ପଡ଼ିଗଲା । ତାଆଁକ ଦୁଇ ଭାଇଙ୍କ ମଧ୍ୟରୁ ଜଣେ କହିଲା, "ଆମ ସମସ୍ତଙ୍କ ଯତ୍ନ ନେବା ପାଇଁ ଗୋଟିଏ ମା' ମିଳିଥିଲା । କିନ୍ତୁ ଦୁଃଖର ବିଷୟ ଯେ ଆମେ ତାକୁ ମାରିଦେଲୁ ।" ଏହିପରି ସମସ୍ତେ ଜଣେ ଜଣେ ହୋଇ ନିଜର ଦୁଃଖ ପ୍ରକାଶ କଲେ ।

ଶେଷରେ ମିଣ୍ଟୁ ଆଉ ସହି ନପାରି କହିଲା, "ଏସବୁର କାରଣ ହେଉଛି ମୁଁ । ଯେତେବେଳେ ବି ସ୍ୱପ୍ନରେ ମୁଁ କୌଣସି ସ୍ତ୍ରୀଲୋକକୁ ଦେଖେ, ମୁଁ ଆନନ୍ଦରେ ବିଭୋର ହୋଇପଡ଼େ ଏବଂ 'ସ୍ନେହମୟୀ ମା' 'ସ୍ନେହମୟୀ ମା' ବୋଲି ପାଟିକରି ଉଠେ । କିନ୍ତୁ ଆଜି ମୁଁ ଜୀବନ୍ତ ମା'ଟିଏ ପାଇ ଅଜ୍ଞାନବଶତଃ ତାକୁ ନିଜେ ଶର ମାରିଦେଇଛି । କେଡ଼େ ଅଭାଗା ମୁଁ ।" ଏହା କହି ସେ କାନ୍ଦ କାନ୍ଦ ସେଠାରୁ ଚାଲିଯିବାକୁ ବସିଲା । ମିଣ୍ଟୁର ଦୁଃଖ ଦେଖି ସମସ୍ତଙ୍କର ତା' ଉପରେ ଦୟା ଆସିଲା । ସେମାନେ ତାକୁ ନଯିବାକୁ ଅନୁରୋଧ କଲେ । କିନ୍ତୁ ମିଣ୍ଟୁ କାହା କଥା ଶୁଣିଲା ନାହିଁ । ଦୁଃଖ ଓ ଭୟରେ ଥରଥର ହୋଇ କହିଲା, "ପିଟର୍ କଥା ଭାବିଲେ ମତେ ଡର ଲାଗୁଛି । ସେ ଆସିବେ

ମତେ କଣ କହିବ ? ସେ ଆସିବା ପୂର୍ବରୁ ମୁଁ ଏଠାରୁ ଗ୍ଲଲ ଯିବା କଥା ।”

ଏହିପରି ସମସ୍ତେ ଦୁଃଖରେ ବସିଥାନ୍ତି । କିଛିସମୟପରେ ପିଟର ଜନ୍ ଏବଂ ମାଇକେଲ୍‌ଙ୍କ ସହିତ ସେଠାରେ ଆସି ପହଞ୍ଚିଲ । ପ୍ରଥମେ ଆସି ସେ ୱେଣ୍ଡି ବିଷୟରେ ପଗ୍ଭରିଲ, “ତୁମେମାନେ ୱେଣ୍ଡିକୁ ଦେଖିଛ କି ?” ତା’ପରେ ମିଣ୍ଟୁ ବସିଥିବା ଯାଗାରୁ ଉଠି ଧୀରେ ପିଟର୍‌କୁ କହିଲ, “ମୋ ସାଙ୍ଗରେ ଆସ, ମୁଁ ତୁମକୁ ୱେଣ୍ଡି ପାଖକୁ ନେଇଯିବ ।” ଏହା କହି ସେ ୱେଣ୍ଡି ପଡ଼ିଥିବା ସ୍ଥାନଟି ଦେଖାଇ ଦେଲ । ୱେଣ୍ଡି ନିଶ୍ଚଳହୋଇ ପଡ଼ିଥାଏ ।

ପିଟର୍ ସେଠାକୁ ଧାଇଁଗଲ । ଆଣ୍ଠୁମାଡ଼ି ବସି ଦେଖିଲ ଏବଂ ୱେଣ୍ଡିର ଛାତିରୁ ଶରଟିକୁ ଟାଣି ଆଣିଲ । ପିଟର୍‌କୁ ମିଣ୍ଟୁ ଉପରେ ଏତେ ରାଗ ଆସୁଥାଏ ଯେ ତାକୁ ଜୀବନରେ ମାରିଦେବା ପାଇଁ ମଧ୍ୟ କିସ ପଚ୍ଛାନ୍ତା ନାହିଁ । ହଠାତ୍ ୱେଣ୍ଡି ହାତଟା ଟିକିଏ ହଲ୍‌ଇଲ । ପିଟର୍ ଖୁସିରେ ପାଟିକରିଉଠିଲ, “ଆରେ ପିଲେ ସେ ବଞ୍ଚିଛି, ସେ ବଞ୍ଚିଛି ।” ପିଟର୍ ନଇଁପଡ଼ି ଦେଖିଲ ଯେ ୱେଣ୍ଡି ବେକରେ ପିନ୍ଧିଥିବା ଚେନ୍‌ଟିରେ ତାର ବଡ଼ ବୋତାମଟି ଲକେଟ୍ ହୋଇରହିଛି ।

ପିଟର୍ ତା’ପରେ ସମସ୍ତଙ୍କୁ ସେ ବୋତାମଟି ଦେଖାଇ କହିଲ, “ଦେଖ, ଶରଟି ଆସି ସେ ହାରର ଲକେଟ୍‌ଟି ଉପରେ ବାଜିଛି । ଯେଉଁଟିକି ମୁଁ ତାକୁ ସ୍ନେହର ଉପହାର ଦେଇଥିଲି ଏବଂ ଏହା ହିଁ ୱେଣ୍ଡିର ପ୍ରାଣରକ୍ଷା କରିଦେଲ ।”

ପିଟର୍ ତା’ପରେ ୱେଣ୍ଡିକୁ କହିଲ, “ୱେଣ୍ଡି ତୁମେ ଶୀଘ୍ର ଭଲ ହୋଇଯିବ । ତୁମେ ଶୀଘ୍ର ଭଲ ହୋଇଗଲେ ମୁଁ ତୁମକୁ ଜଳପରୀ-ମାନଙ୍କୁ ଦେଖାଇବାକୁ ସାଙ୍ଗରେ ନେଇଯିବ ।” ୱେଣ୍ଡି ପ୍ରକୃତରେ ଶୀଘ୍ର ଭଲ ହୋଇଗଲ । କିନ୍ତୁ ଏତେ ଦୂରରୁ ଉଡ଼ି ଉଡ଼ି ଆସିଥିବାରୁ

ତାକୁ ବହୁତ ଦୁର୍ବଳ ଲାଗୁଥିଲା । ତେଣୁ ସେ ଯେଉଁ ଜାଗାରେ ପଡ଼ିଥିଲା ସେଠାରୁ ଉଠି ପାରୁନଥାଏ । ପିଟର୍ ତାର ଅନ୍ୟ ସାଙ୍ଗ ମାନଙ୍କୁ କହିଲା, "ଓ୍ୱେଣ୍ଡିକୁ ଶୀଘ୍ର ସୁସ୍ଥ କରିବା ପାଇଁ ଗୋଟିଏ ମାତ୍ର ଉପାୟ ଅଛି । ତାହା ହେଉଛି ସେ ଯେଉଁଠି ପଡ଼ିଛି ତା' ଚାରିପଟେ ଗୋଟିଏ ସୁନ୍ଦର ଘର ତିଆରି କରିଦେବା ।"

ପିଟର୍ ଓ୍ୱେଣ୍ଡିକୁ ପଚାରିଲା, "ଓ୍ୱେଣ୍ଡି, ତମକୁ କେମିତିକା ଘର ଭଲ ଲାଗେ ମତେ କୁହ । ମୁଁ ତୁମପାଇଁ ସେମିତିକା ଘରଟିଏ ତିଆରି କରିଦେବି ।" ଓ୍ୱେଣ୍ଡି ଆଖି ନ ଖୋଲି ସେପରି ଶୋଇ ଶୋଇ ତାକୁ ଯେପରି ଘର ଭଲ ଲାଗେ ଗୀତ ଆକାରରେ ଗାଇ ପିଟର୍‌କୁ କହିଦେଲା । ଗୀତରେ ସେ ପିଟର୍‌କୁ କହିଲା ଯେ ତା ଘରଟି ପୃଥିବୀରେ ଥିବା ସବୁ ଘରଠାରୁ ଅତି ଶ୍ରେଷ୍ଠ ଏବଂ ଅତି ସୁନ୍ଦର ହୋଇଥିବା ଦରକାର ।

ସୁନ୍ଦର ଘର ହୋଇବ ମୋର
ନ ଥିବ କାହିଁ ଆଉ,
ନାଲି କାନ୍ଥକୁ ସବୁଜ ଛାତ
ଢାଙ୍କିବ ଦାଉ ଦାଉ ।

ଓ୍ୱେଣ୍ଡିର ଗୀତ ଶୁଣି ସମସ୍ତେ ତା'ମନ ପସନ୍ଦର ଘରଟିଏ ତିଆରି କରିବା ପାଇଁ ଜିନିଷ ଯୋଗାଡ଼ କରି ଆଣିବା ପାଇଁ ଗଲେ । ବଣରୁ ସେମାନେ ନାଲିବର୍ଣ୍ଣର କାଠଗଣ୍ଡିମାନ ଖୋଜି ଆଣିଲେ । ମାଟିତଳେ ଘରୁ ଗୋଟିଏ ସୁନ୍ଦର ନାଲି ଗାଲିଚା ବି ନେଇଆସିଲେ । ତା'ଛଡ଼ା ପଥର ଉପରେ ଜମିଥିବା କୋମଳ ସବୁଜ ଶିଉଳି ମଧ୍ୟ ଖୋଜି ଆଣିଲେ । ଏହିପରି କାଠ, ପତ୍ର, ଶିଉଳି ଇତ୍ୟାଦି ସାହାଯ୍ୟରେ ଗୋଟିଏ ସୁନ୍ଦର ଛୋଟିଆ ଘର ଓ୍ୱେଣ୍ଡି ପାଇଁ ତିଆରି କରିଦେଲେ । ଓ୍ୱେଣ୍ଡିର ଭାଇ ଜନ୍ ଗୋଟିଏ ଲମ୍ବା ଟୋପି ମୁଣ୍ଡରେ ପିନ୍ଧିଥାଏ ।

ସେଣ୍ଟ ଟୋପିଟି ସାହାଯ୍ୟରେ ଛାତ ଉପରେ ଗୋଟିଏ ଧୂଆଁନଳୀ ତିଆରି ହେଲା ଏବଂ ମିଣ୍ଟୁର ଜୋତାରୁ ରବର ଖଣ୍ଡେ କାଟି ନେଇ ଘରର ଦୁଆରରେ ଲଗାଇ ଦିଆଗଲା । ଯା'ଫଳରେ କବାଟଟି ନିଃଶବ୍ଦରେ ଖୋଲିବ ଓ ବନ୍ଦ ହେବ ।

ୱେଣ୍ଡି ସେତେବେଳେ ଶୋଇ ପଡ଼ିଥାଏ ଏବଂ ତା' ଶୁଣୁ ଘର ତିଆରି ହୋଇଗଲା । ପିଲାମାନେ ୱେଣ୍ଡିର ମନମୁତାବକ ଘରଟିଏ ତିଆରି କରିଦେଇଥିବାରୁ ଖୁବ୍ ଖୁସି ହେଉଥାନ୍ତି । ସେ ଘରର ଛୋଟଦ୍ୱାରଟି ଖୋଲି ତା'ପରେ ୱେଣ୍ଡି ବାହାରକୁ ଆସିଲା । ଘରଟି ତାର ଖୁବ୍ ପସନ୍ଦ ହେଲା । ତା'ପରେ ସେ ସବୁ ପିଲାମାନଙ୍କୁ ସେ ଘର ଭିତରକୁ ଆସିବାକୁ ଡାକିଲା । ସମସ୍ତେ ସେ ଭିତରେ ଜାକିଜୁକି ହୋଇ ବସିଲେ । ୱେଣ୍ଡି ସବୁ ପିଲାମାନଙ୍କୁ 'ସିଣ୍ଡ୍ରେଲା' କାହାଣୀ ଶୁଣାଇଲା । 'ସିଣ୍ଡ୍ରେଲା' ନାମକ ଏକ ସୁନ୍ଦର ନିରୀହ ଝିଅଟିଏ ସାବତ ମା' ଯୋଗୁଁ କିପରି ବହୁତ କଷ୍ଟ ପାଉଥାଏ; କିନ୍ତୁ ଶେଷରେ ସେ ଏକ ସୁନ୍ଦର ରାଜକୁମାରକୁ କିପରି ବାହାହୋଇ ରାଜରାଣୀ ହେଲା, ସେ କଥା ପିଲାମାନେ ଶୁଣି ଖୁବ୍ ଖୁସି ହେଲେ । ଏହାପରେ ପିଲାମାନେ ୱେଣ୍ଡିକୁ ସେମାନଙ୍କର ମା' ହୋଇ ତାଙ୍କ ସାଙ୍ଗରେ ରହିବା ପାଇଁ ଅଳି କଲେ ଏବଂ କାହାଣୀ ଶେଷ ହେବାପରେ ସେମାନଙ୍କୁ ଶେଯରେ ନେଇ ଶୁଆଇଦେବା ପାଇଁ ଅନୁରୋଧ କଲେ ।

ୱେଣ୍ଡି ସେମାନଙ୍କର ଅନୁରୋଧକୁ ଭାଙ୍ଗିପାରିଲାନାହିଁ । କହିଲା, "ଆଚ୍ଛା ଆଚ୍ଛା, ମୁଁ ତୁମମାନଙ୍କୁ ମା'ଭଳି ସ୍ନେହ କରିବାକୁ ଚେଷ୍ଟା କରିବି । ତୁମେମାନେ ଖୁବ୍ ଦୁଷ୍ଟ ହୋଇଛ ।"

ସେ ରାତିଟି ପିଲାମାନେ ଖୁବ୍ ଖୁସିରେ ୱେଣ୍ଡି ସହିତ କଟାଇଲେ । କାହାଣୀ ସରିବା ପରେ ୱେଣ୍ଡି ସେମାନଙ୍କୁ ଗଛ ତଳେ ଥିବା ତାଙ୍କ ଘରକୁ ଯାଇ ଶେଯ ଭିତରେ ଖୁବ୍ ଯତ୍ନର ସହିତ ଶୁଆଇଦେଲା

ଏବଂ ନଜେ ଆସି ତାର କୁନଦ୍ଧରଟି ଭିତରେ ହିଁ ଶୋଇଲା । ତା'ପରେ ପିଟର୍ ତାର ଖଣ୍ଡାଟି ଧରି ଆସି ୱେଣ୍ଡିର ଘର ସାମନାରେ ରାତିସାରା ପହରା ଦେଲା ।

ଅର୍ଦ୍ଧରାତ୍ରିର ଘୋର ଅନ୍ଧକାରରେ ମଧ୍ୟ ସେ ଛୋଟ ଘରଟି ଖୁବ୍ ନିରାପଦ ଦେଖାଯାଉଥାଏ । ଝରକାର ଛିଦ୍ର ଦେଇ ଘର ଭିତରର ଆଲୋକରେଖା ବାହାରକୁ ଦେଖାଯାଉଥାଏ । ଧୂଆଁନଳୀ ବାଟେ ଧୂଆଁ ଉପରକୁ ଯାଉଥାଏ । ଦୂରରୁ ମାତାଲ ଜଳଦସ୍ୟୁମାନଙ୍କ କୋଳାହଳ; ଅଶ୍ଳୀଳ ଗୀତ ତଥା ବଣଜନ୍ତୁଙ୍କର ଗର୍ଜନ ମଧ୍ୟ ଶୁଣା-ଯାଉଥାଏ । କାଳେ ଜଳଦସ୍ୟୁମାନେ ଆସି ଆକ୍ରମଣ କରିବେ ବୋଲି ପିଟର ରାତିସାରା ଅନିଦ୍ରା ହୋଇ ପହରା ଦେଉଥାଏ ।

## ଜଳପରୀ

ଖରାଦିନେ ପିଲାମାନେ ଅନେକ ଥର ହ୍ରଦକୁ ଯାଇ ପହଁରନ୍ତି ଏବଂ ପାଣିରେ ମିଛିମିଛିକା ଜଳପରୀ ମଧ୍ୟ ଖେଳନ୍ତି । ଦିନେ ସନ୍ଧ୍ୟାବେଳେ ଖୁବ୍ ଗରମ ହେଉଥାଏ । ପିଟର୍, ୱେଣ୍ଡି ଓ ଅନ୍ୟ ସବୁ ପିଲାମାନେ ହ୍ରଦକୁ ପହଁରିବାକୁ ଗଲେ । ପହଁରିପହଁରି ହ୍ରଦର ଯେଉଁଠାରେ ଜଳପରୀମାନେ ଥା'ନ୍ତି ସେଠାକୁ ଚାଲିଗଲେ । ୱେଣ୍ଡି ଓ ତା'ଭାଇ ଦୁହେଁ ଆଗରୁ କେବେ ପ୍ରକୃତ ଜଳପରୀ ଦେଖିନଥିଲେ । ସେମାନେ ଯେତେବେଳେ ପ୍ରକୃତ ଜଳପରୀ ଦେଖିଲେ ଖୁସିରେ ଅଧୀର ହୋଇ ପଡ଼ିଲେ । କ୍ରମେ ସନ୍ଧ୍ୟା ନଇଁ ଆସିଲା, ପୂନଅଁ ଚାନ୍ଦ ଉଇଁ ଉଠିଲା ।

ପୂର୍ଣ୍ଣମୀ ରାତିରେ ଜଳପରୀମାନେ ଖୁବ୍ ସୁନ୍ଦର ଦେଖାଯାଆନ୍ତି । ଜନ୍ ଓ ମାଇକେଲ୍ ପୂର୍ଣ୍ଣମୀ ରାତିରେ ଜଳପରୀମାନଙ୍କୁ ଦେଖି ଖୁସିରେ

ଚକ୍କର କରିଉଠିଲେ । ଅନେକ ସମୟରେ ଶହ ଶହ ଜଳପରୀ ଏକା ସାଙ୍ଗରେ ହ୍ରଦରେ ଖେଳୁଥିବା ଦେଖାଯାଆନ୍ତି । ଏହା ପ୍ରକୃତରେ ଏକ ଲୋଭନୀୟ ଦୃଶ୍ୟ । କିନ୍ତୁ ପିଲ୍ମାନେ ଜଳପରୀମାନଙ୍କୁ ଦେଖି ଖୁସିରେ ସେମାନଙ୍କ ପାଖକୁ ଯେତେବେଳେ ଯିବାକୁ ଚେଷ୍ଟା କରନ୍ତି ସେମାନେ ସାଙ୍ଗେ ସାଙ୍ଗେ କୁଆଡ଼େ ଉଭେଇ ଯାଆନ୍ତି ।

"ଦେଖ ସେଠାରେ ଆଉ ଗୋଟିଏ ଶ୍ରେଷ୍ଠ ଜଳପରୀଟିଏ ଖେଳୁଛି । ଆମେ ତାକୁ ନିଶ୍ଚୟ ଧରି ପାରିବା ।" ଜନ୍ ଡାର୍ଲିଙ୍ଗ ଖୁସିରେ ପାଟି କରି ଅନ୍ୟ ସାଥିମାନଙ୍କୁ କହିଲ୍ । ଏହିପରି କହି ସେ ସାଙ୍ଗେ ସାଙ୍ଗେ ସେଠାକୁ ପହଁରିଯାଇ ସତକୁ ସତ ସେ ଜଳପରୀଟିକୁ ହାତରେ ଧରି-ନେଲ୍ । କିନ୍ତୁ ଜଳପରୀମାନଙ୍କୁ ଧରିବା କିଛି ସହଜ କାମ ନୁହେଁ । ସେମାନଙ୍କ ଶରୀରଗୁଡ଼ିକ ହାତରେ ଧରିବା ପାଇଁ ଖୁବ୍ ଶକ୍ତ ଲଗେ । ଯଦିଓ କେହି କେତେବେଳେ ହାତରେ ଧରା ପଡ଼ିଯାଆନ୍ତି ସେମାନେ ତାଙ୍କ ଶରୀରକୁ ପୂର୍ବ ଅପେକ୍ଷା ଆହୁରି ଝାଣ କରିଦିଅନ୍ତି । ଯାହା ଫଳରେ କେହି ତାଙ୍କୁ ଧରିପାରନ୍ତିନାହିଁ ଏବଂ ବିଫଳରେ ଛାଡ଼ିଦିଅନ୍ତି । ଜନ୍ ସେହି ଶ୍ରେଷ୍ଠ ଜଳପରୀଟିକୁ ଅତ୍ୟନ୍ତ ଚତୁରତାର ସହିତ ଧରି ନେଇଥିଲ୍; କିନ୍ତୁ ଶ୍ରେଷ୍ଠ ଜଳପରୀଟି ମଧ୍ୟ ସେତିକି ଚତୁରତାର ସହିତ ମାଛ ଭଳି ତା' ହାତରୁ ଖସି ପାଣି ଭିତରକୁ ଚାଲିଗଲ୍ ।

ଏଣେ ଓ୍ୱେଣ୍ଡି ହ୍ରଦ କୂଳରେ ବସି ପିଲାଙ୍କ ପୋଷାକ ମରାମତି କରିବାରେ ବ୍ୟସ୍ତ ଥାଏ । ତାର ସିଲେଇ କାମ ଠିକ୍ ସରିଲ୍‌ବେଳକୁ ହ୍ରଦରେ ଏକ ପରିବର୍ତ୍ତନ ହେବା ଦେଖାଗଲ୍ । ହଠାତ୍ ହ୍ରଦସାରା ତରଙ୍ଗ ଖେଳିଗଲ୍ । ଚନ୍ଦ୍ର ମେଘ ଉହାଡ଼ରେ ଲୁଚିଗଲେ । ଚାରିଆଡ଼େ ଅନ୍ଧାର ଘୋଟିଗଲ୍ । ଓ୍ୱେଣ୍ଡି ଆଉ ସିଲେଇ କରିପାରିଲ୍‌ନାହିଁ । ଯେଉଁ ହ୍ରଦରେ ସବୁବେଳେ ପିଲ୍ମାନଙ୍କ ହସ ଖୁସିର ଲହରୀ ଖେଳୁଥାଏ, ତାହା ଏକ ଭୟଙ୍କର ସ୍ଥାନ ପରି ମନେହେଲ୍ । ସନ୍ଧିର

ଘୋର ଅନ୍ଧକାର ଭେଦକରି ଡଙ୍ଗାଭଳି ଗୋଟିଏ କିଛି ଜିନିଷ ସମୁଦ୍ର ଆଡ଼ୁ ହ୍ରଦ ପଟକୁ ମାଡ଼ି ଆସିଲା ପରି ଜଣାଯାଉଥାଏ । କିନ୍ତୁ ଜିନିଷଟି କ'ଣ ତାହା କେହି ନିର୍ଦ୍ଦିଷ୍ଟ କରିପାରୁନଥାନ୍ତି ।

କିଛି ସମୟ ପରେ ସବୁ ପିଲମାନେ ଘୁମେଇବା ଆରମ୍ଭ କଲେ । କିନ୍ତୁ ତାଙ୍କ ଭିତରେ ଜଣେ ପିଲ ଥିଲା ଯେ'କି ଘୁମେଇବା ଅବସ୍ଥାରେ ମଧ୍ୟ ବିପଦ ଆସୁଥିବାର ଅନୁମାନ କରିପାରୁଥିଲା । ସେ ହେଉଛି ପିଟର୍ ପାନ୍ । ସେ ସାଙ୍ଗେ ସାଙ୍ଗେ ଚେଇଁଉଠିଲା ଏବଂ ବଡ଼ ପାଟିକରି ସବୁ ପିଲମାନଙ୍କୁ ମଧ୍ୟ ଉଠାଇଦେଲା ।

"ଜଳଦସ୍ୟୁ" ବୋଲି ଗୋଟିଏ ଚିତ୍କାରକରି ପିଟର୍ ସମସ୍ତଙ୍କୁ ଜଣାଇଦେଲା ଏବଂ ଆଦେଶ ଦେଇ କହିଲା, "ଶୀଘ୍ର ପହଁରି ପହଁରି ଆର କୂଳକୁ ପଳାଇଯାଅ ।" ହଠାତ୍ ସେ ଯାଗାଟା ନିଃଶବ୍ଦ ହୋଇଗଲା । ଡଙ୍ଗାଟି ପିଲମାନଙ୍କ ଆଡ଼କୁ ଶୀଘ୍ର ଶୀଘ୍ର ମାଡ଼ି ଆସୁଥାଏ । ସେଥିରେ ସ୍ମୀ ଓ ସ୍ଟାର୍କି ନାମକ ଦୁଇଟି ଜଳଦସ୍ୟୁ ବସିଥା'ନ୍ତି । ପିଲମାନେ ତାଙ୍କର ସମସ୍ତ ଶକ୍ତି ଲଗାଇ କୂଳଆଡ଼କୁ ପହଁରି ଚାଲିଥାନ୍ତି । କିନ୍ତୁ ଏପରି ଦୁଃସମୟରେ ମଧ୍ୟ ପିଟର୍ ଲୋହିତ ବର୍ଣ୍ଣୀୟ ରାଜକୁମାରୀ 'ଟାଇଗର୍ ଲିଲି'କୁ ଚିହ୍ନିପାରିଥିଲା । ଜଳଦସ୍ୟୁମାନେ ତାର ଗୋଡ଼, ହାତ ବାନ୍ଧି ତାଙ୍କ ଡଙ୍ଗାଉପରେ ପକାଇଦେଇଥାନ୍ତି । ପିଟର୍ ଜାଣିପାରିଲା ଯେ, ଜଳଦସ୍ୟୁମାନେ ଲିଲିକୁ ନେଇ ସମୁଦ୍ର ମଝିରେ ଥିବା ଗୋଟିଏ ପଥର ଉପରେ ହାତ ଗୋଡ଼ ବାନ୍ଧି ପକାଇଦେବେ । କିଛି ସମୟ ପରେ ସମୁଦ୍ରର ଜୁଆରରେ ପଥର ସହିତ ଏହି ରାଜକୁମାରୀଟି ମଧ୍ୟ ପାଣିରେ ବୁଡ଼ିଯିବ ।

ପିଟର୍ ଏପରି ସମୟରେ ନିଜ ପ୍ରାଣ ପ୍ରତି ମମତା ନ ରଖି ସେହି ନିରୀହ ରାଜକୁମାରୀର ଜୀବନ ବଞ୍ଚାଇବା ପାଇଁ ଦୃଢ଼ ନିଶ୍ଚୟ କଲା । ସେ ଏକ ବୁଦ୍ଧି ପାଞ୍ଚିଲା । ଜଳଦସ୍ୟୁମାନଙ୍କ ନେତା ଜେମ୍ସ୍ ହୁକ୍‌ର

ସ୍ୱରକୁ ଅନୁକରଣକରି ଡଙ୍ଗାରେ ବସିଥିବା ଦୁଇ ଜଳଦସ୍ୟୁଙ୍କୁ ଆଦେଶ ଦେଲା—"ରାଜକୁମାରୀଙ୍କୁ ମୁକ୍ତ କରିଦିଅ । ତା'ହାତ, ଗୋଡ଼ରେ ବନ୍ଧା ହୋଇଥିବା ଦଉଡ଼ିକୁ କାଟିଦିଅ ।"

ଜଳଦସ୍ୟୁ ଦୁଇଟି ଅନ୍ଧାର ହୋଇଥିବା ହେତୁ ପିଟରକୁ ଦେଖି-ପାରିଲେନାହିଁ । କେବଳ ସ୍ୱର ଶୁଣି ଭାବିଲେ ଯେ, ତାଙ୍କ ନେତା ଏ ଆଦେଶ ଦେଉଛନ୍ତି । ନେତାଙ୍କର ଏପରି ଆଦେଶ ଶୁଣି ପ୍ରଥମେ ଦୁଇ ଜଳଦସ୍ୟୁ ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ, "ଆଜ୍ଞା, ଆପଣ ତ........."

ପିଟର୍ ସାଙ୍ଗେ ସାଙ୍ଗେ ପୁଣି ଜଳଦସ୍ୟୁର ସ୍ୱର ଅନୁକରଣ କରି କ୍ରୁଦ୍ଧ ଭାବରେ କହିଲା, "ମୁଁ ଯାହା ଆଦେଶ ଦେଉଛି ଅବିଳମ୍ବେ ପାଳନ କର ନଚେତ୍ ତୁମ ଜୀବନ ପ୍ରତି ଆଶା ଛାଡ଼ ।

ନେତାଙ୍କର ଏପରି କଥା ଶୁଣି ଦୁହେଁ ଚୁପ୍‌ଚାପ୍ 'ଟାଇଗର୍ ଲିଲି'ର ଗୋଡ଼ ହାତରେ ବନ୍ଧାହୋଇଥିବା ଦଉଡ଼ିକୁ କାଟିଦେଇ ତାକୁ ମୁକ୍ତ କରିଦେଲେ । ରାଜକୁମାରୀ ସାଙ୍ଗେ ସାଙ୍ଗେ ପାଣିକୁ ଡେଇଁପଡ଼ି ପହଁରି ପହଁରି ପିଲମାନେ ଯେଉଁଆଡ଼େ ଥିଲେ ସେଇଆଡ଼କୁ ଗ୍ଭଲିଗଲା ।

ଜଳଦସ୍ୟୁମାନେ ତା'ପରେ ପଛକୁ ବୁଲି କାତମାରି ଫେରିଯିବାକୁ ଲାଗିଲେ । ସେତେବେଳେ ସେମାନେ ସାମନାରେ ନେତା ଜେମ୍‌ସ ହୁକ୍‌କୁ ପହଁରି ପହଁରି ତାଙ୍କ ଆଡ଼କୁ ଆସୁଥିବା ଦେଖିପାରିଲେ ଏବଂ ତା'ଠାରୁ ଜାଣିପାରିଲେ ଯେ ରାଜକୁମାରୀଙ୍କୁ ମୁକ୍ତ କରିବା ପାଇଁ ପ୍ରକୃତରେ ସିଏ ଆଦେଶ ଦେଇ ନଥିଲା । ପିଟର୍ ଗ୍ଭଲାକ୍ କରି ରାଜକୁମାରୀଙ୍କୁ ମୁକ୍ତ କରିଦେଇଛି । ଜେମ୍‌ସ ହୁକ୍ ସେଇ ଦୁଇ ମୂର୍ଖ ଜଳଦସ୍ୟୁଙ୍କ ଉପରେ ଖୁବ୍ ରାଗି ଏକ ଧକ୍‌କାରେ ଡଙ୍ଗାରୁ ସମୁଦ୍ରକୁ ଫିଙ୍ଗିଦେଲା ଓ ଯେତେଶୀଘ୍ର ପାରନ୍ତି ଜାହାଜକୁ ଫେରିଯିବା ପାଇଁ

ଆଦେଶ ଦେଲା । ନେତା ଜେମ୍ସ ହୁକ୍ ଡଙ୍ଗା ଉପରେ ଏକୁଟିଆ ଜଗି ବସିଲା ପୁଣି ଋରଣାପ୍ତ ରାଜକୁମାରୀଙ୍କୁ ଧରିବା ପାଇଁ ।

ଜଳଦସ୍ୟୁମାନେ ବୃକ୍ଷର ଅନ୍ତରାଳରେ ଲୁଚିଗଲେ । ପିଟର୍ ଓ ଅନ୍ୟ ପିଲମାନେ ଜେମ୍ସ ହୁକ୍ ଡଙ୍ଗାରେ ଏକା ଥିବା ଜାଣି ତାକୁ ଆକ୍ରମଣ କରିବା ପାଇଁ ପୁଣି ଫେରିଆସିଲେ । ଜେମସ୍ ଏବଂ ପିଲ-ମାନଙ୍କ ମଧ୍ୟରେ ଗୋଟିଏ ଭୟଙ୍କରଧରଣର ଘୋମାଘୋଟ ଯୁଦ୍ଧ ହେଲା । ଜେମ୍ସ ହୁକ୍ ତା'ର ଲୁହା ପଞ୍ଝାରେ ପିଟର୍‌କୁ ଖୁବ୍ କ୍ଷତିଆ ଖାବରା କରି ଦେଇଥାଏ । ପିଟର୍ ଜେମ୍ସ ହୁକ୍‌ଙ୍କ ମଧ୍ୟରେ ଯୁଦ୍ଧ ହେଉଥିବା ସମୟରେ ଅନ୍ୟ ପିଲମାନେ ଜେମ୍ସ ହୁକ୍‌ର ଡଙ୍ଗାରେ ବସି ଓ ସାଙ୍ଗରେ ରାଜକୁମାରୀ 'ଟାଇଗର ଲିଲି'କୁ ଧରି କୂଳକୁ ଗ୍ଳଲିଗଲେ ସେତେବେଳେ ଜେମ୍ସ ହୁକ୍ ଜାଣିପାରିଲା ଯେ, ସେ ଏ ଯୁଦ୍ଧରେ ହାରିଯାଇଛି, ପ୍ରାଣ ବଞ୍ଚାଇବାପାଇଁ ଶୀଘ୍ର ଶୀଘ୍ର ପହଁରି ତା' ଜାହାଜକୁ ଗ୍ଳଲିଗଲା ।

ପିଟର୍ ଓ ୱେଣ୍ଡି ଛଡ଼ା ଆଉ ସମସ୍ତେ କୂଳକୁ ଫେରିଯାଇଥାନ୍ତି । ୱେଣ୍ଡି ଅଚେତ୍ ହୋଇଯାଇଥାଏ । ପିଟର୍ ତାକୁ ଧରି ରଖିଥାଏ । ତା'ପରେ ପିଟର୍ ୱେଣ୍ଡିକୁ ଟାଣି ଟାଣି ନେଇ ହ୍ରଦ ଭିତରେ ଥିବା ଗୋଟିଏ ଭୟଙ୍କ ପାହାଡ଼ ଉପରେ ଶୁଆଇଦେଲା ଏବଂ ନିଜେ ମଧ୍ୟ ତା' ପାଖରେ ଶୋଇଗଲା । ପିଟର୍ ଜାଣିପାରୁଥିଲା ଯେ ଆଉ କିଛି ସମୟ ପରେ ଗୋଟିଏ ବଡ଼ ଜୁଆର ଆସିଲେ ସେ ଦୁହେଁ ସମୁଦ୍ର ଭିତରେ ବୁଡ଼ିଯିବେ । କିନ୍ତୁ ସେ ଅସହାୟ । କ'ଣ ବା କରିପାରିବ ? ୱେଣ୍ଡି ଖୁବ୍ କ୍ଳାନ୍ତ ହୋଇ ପଡ଼ିଥିଲା । ପିଟର୍ ମଧ୍ୟ ଖୁବ୍ କ୍ଷତବିକ୍ଷତ ହୋଇଯାଇଥିଲା । ତେଣୁ ଦୁହେଁ ପହଁରି ଯାଇ ପାରିବେନାହିଁ କି ଉଡ଼ିଯାଇ ପାରିବେନାହିଁ ।

ହ୍ରଦରେ ଜୁଆର ଧୀରେ ଧୀରେ ବଢ଼ି ଚାଲିଥାଏ। ଓ୍ୱେଣ୍ଡି ଓ ପିଟର୍ ଉଭୟେ ଆଖି ସାମନାରେ ମୃତ୍ୟୁକୁ ଅପେକ୍ଷା କରୁଥିଲେ । ଶେଷକୁ ସେମାନେ ଆଉ ସହି ନପାରି ଆଖିକୁ ବନ୍ଦ କରି ପଥରଟି ଉପରେ ପଡ଼ିରହିଲେ । ଏହି ସମୟରେ ପିଟର୍ ଦେହରେ କଣ ଗୋଟିଏ ହାଲୁକା ଜିନିଷ ଆସି ଘଷିହେଲା । ତାହା ହେଉଛି କିଛିଦିନ ପୂର୍ବେ ମାଇକେଲ୍ ତିଆରି କରିଥିବା ଗୋଟିଏ ଗୁଡ଼ିର ଲାଞ୍ଜ । ଲାଞ୍ଜଟି ପିଟର୍ ହାତରେ ଘଷିହୋଇସାରି ପାଣିରେ ପଡ଼ି ଭାସି ଭାସି ସେମାନଙ୍କ ଠାରୁ ଦୂରେଇ ଯାଉଥିଲା ।

ତା'ପର ମୁହୂର୍ତ୍ତରେ ପିଟର୍ ଜାଣିପାରି ପାଟିକରିଉଠିଲା, "ମାଇ-କେଲ୍‌ର ଗୁଡ଼ି" । ତାପରେ ସାଙ୍ଗେ ସାଙ୍ଗେ ଯାଇ ଗୁଡ଼ିର ଲାଞ୍ଜଟିକୁ ଧରିନେଲା ଏବଂ ଲାଞ୍ଜଟି ସାହାଯ୍ୟରେ ଗୁଡ଼ିଟିକୁ ମଧ୍ୟ ପାଖକୁ ଟାଣି ଆଣିଲା । ଗୁଡ଼ିର ଲାଞ୍ଜରେ ଓ୍ୱେଣ୍ଡିକୁ ଖୁବ୍ ମଜଭୁତ୍ ଭାବେ ବାନ୍ଧି ଦେଲା । କିନ୍ତୁ ଓ୍ୱେଣ୍ଡି ପିଟର୍‌କୁ ଜାବୁଡ଼ିଧରି ବିକଳଭାବେ କହୁଥାଏ —"ପିଟର୍ ମୁଁ ତୁମକୁ ଏଠି ଏକୁଟିଆ ଛାଡ଼ି ଯାଇପାରିବିନାହିଁ ।" କିନ୍ତୁ ପିଟର୍ ଜାଣିଥିଲା ଯେ ଗୁଡ଼ି ସାହାଯ୍ୟରେ ଦୁହେଁ କୂଳକୁ ଯାଇ ପାରିବେନି । ତେଣୁ ତାକୁ ସେହିଠାରେ ହିଁ ରହିବାକୁ ହେବ । ତା'ପରେ ସେ ଓ୍ୱେଣ୍ଡିକୁ ବିଦାୟ ଜଣାଇ ପାଣିକୁ ଠେଲିଦେଲା । ଓ୍ୱେଣ୍ଡି ଧୀରେ ଧୀରେ ଗୁଡ଼ି ସାଥିରେ ଭାସି ଭାସି କୂଳଆଡ଼କୁ ଚାଲିଲା । ପିଟର୍ ଏକୁଟିଆ ସେହିଠାରେ ରହିଗଲା ।

ଜୁଆର ଧୀରେ ଧୀରେ ବଢ଼ି ଚାଲିଥାଏ । ବିପଦ ମାଡ଼ି ଆସୁଥାଏ । ପିଟର୍ ଏକୁଟିଆ ସେଠାରେ ବସିଥାଏ । ତା' ଦେହରେ ହୋଇଥିବା ଖଣ୍ଡିଆ ଖାବରା ସ୍ଥାନଗୁଡ଼ିକ ଖୁବ୍ ବିନ୍ଧୁଥାଏ । ପିଟର୍ କିନ୍ତୁ ଖୁବ୍ ଧୈର୍ଯ୍ୟ ଓ ସାହସର ସହିତ କଷ୍ଟ ସହି ଯାଉଥାଏ । ସେମାନେ ଧୈର୍ଯ୍ୟ ହରାଉ ନଥାଏ ବରଂ ମନେ ମନେ ଖୁବ୍ ଖୁସି ହେଉଥାଏ ଯେ

ସେ ସମସ୍ତଙ୍କୁ ରକ୍ଷାକରି ନିଜେ ହାରଭିର ସହିତ ମୃତ୍ୟୁବରଣ କରିବ । ଏପରି ଦୁଃସାହସିକ କାର୍ଯ୍ୟ କରି ମୃତ୍ୟୁବରଣ କରୁଥିବାରୁ ମନେ ମନେ ବହୁତ ଗର୍ବ ମଧ୍ୟ ଅନୁଭବ କରୁଥିଲା ।

ହଠାତ୍ ସେତିକବେଳେ ଗୋଟିଏ ବଡ଼ ସମୁଦ୍ର ପକ୍ଷୀ ସେଠାକୁ ଉଡ଼ିଆସିଲା । ଏ ପକ୍ଷୀଟିର ନାଁ ଥିଲା 'ଅଜଣା ପକ୍ଷୀ' । ଥରେ ବିପଦ ସମୟରେ ପିଟର୍ ଏ ପକ୍ଷୀଟିକୁ ମଧ୍ୟ ସାହାଯ୍ୟ କରିଥିଲା । ତେଣୁ ପକ୍ଷୀଟି ତା'ପୂର୍ବ ଋଣ ପରିଶୋଧ କରିବାପାଇଁ ପିଟର୍‌କୁ ଏହି ବିପଦ ସମୟରେ ସାହାଯ୍ୟ କରିବା ପାଇଁ ଆସିଲା । ପକ୍ଷୀଟି ଥଣ୍ଟରେ ତା' ବସାଟିକୁ ଆଣି ପିଟର୍ ବସିଥିବା ପଥରଟି ଉପରେ ପକାଇଦେଲା । ପିଟର୍ ଯାଇ ତା' ଉପରେ ବସିଗଲା । ପକ୍ଷୀଟି ତା'ପରେ ଥଣ୍ଟରେ ବସାଟିକୁ ଧରି ଉଡ଼ି ଉଡ଼ି କୂଳଆଡ଼କୁ ଗଲା । ପିଟର୍ ମନେ ମନେ ପକ୍ଷୀଟିକୁ ଅଶେଷ ଧନ୍ୟବାଦ ଜଣାଉଥାଏ । ୱେଣ୍ଡି ଗୁଡ଼ି ଉପରେ ବସି ଭାସି ଭାସି କୂଳରେ ଲାଗିଲାବେଳକୁ ପିଟର୍ ମଧ୍ୟ ଯାଇ କୂଳରେ ହାଜର ହୋଇଗଲା । ୱେଣ୍ଡିର ଖୁସି କହିଲେ ନ ସରେ, କାରଣ ସବୁ ପିଲାମାନେ ବିପଦରୁ ରକ୍ଷା ପାଇ ଫେରି ଆସିଛନ୍ତି ।

## ଗୁପ୍ତଘର

ମାଟିତଳ ଘରେ ପିଲାମାନେ କିଛିଦିନ ଖୁବ୍ ମଜାରେ କଟାଇଲେ । ସ୍ନେହମୟୀ ମା'ର ଅଭିନୟ କରୁଥାଏ ୱେଣ୍ଡି ଏବଂ ସାହସୀ ପିତାର ଅଭିନୟ କରୁଥାଏ ପିଟର୍ । ପିଲାମାନେ ଜଳଦସ୍ୟୁମାନଙ୍କୁ ଡରି ମାଟିତଳ ଘରେ ରହୁଥାନ୍ତି ଏବଂ ଲୋହିତ ଭାରତୀୟମାନେ ମାଟି

ଉପରେ କାଳେ ଜଳଦସ୍ୟୁମାନେ ଆସି ପୁନର୍ବାର ଆକ୍ରମଣ କରିବେ ସେଥିପାଇଁ ପିଲାମାନଙ୍କୁ ଜଗି ରହିଥାନ୍ତି । କିନ୍ତୁ ଜଳଦସ୍ୟୁଙ୍କ ନେତା ଜେମ୍ସ, ପିଲାମାନେ କେଉଁଠି ଲୁଚି ରହିଛନ୍ତି ଭଲରୂପେ ଜାଣିଥିଲା । ସେ ଭୁଲ୍‌ରେ ଥରେ ସେମାନଙ୍କ ଘରର ଧୂଆଁ ନଳା ଉପରେ ବସି-ଯାଇଥିଲା । ସେହିଦିନଠାରୁ ସେ, ସେହି ସ୍ଥାନଟିକୁ ଭୁଲି ପାରିନଥିଲା ।

ପିଲାମାନେ ମାଟିତଳ ଘରେ ଖୁବ୍ ନିରାପଦର ସହିତ ରହି ନାନା ପ୍ରକାର ଖେଳକୌତୁକରେ ସମୟ କଟାଉଥାନ୍ତି । ଖଟଉପରେ ବସି ତକିଆ ଫିଙ୍ଗାଫିଙ୍ଗି ହୋଇ କୌତୁକ ଯୁଦ୍ଧ କରୁଥାନ୍ତି । ଓ୍ୱେଣ୍ଡି ସେମାନଙ୍କ ପାଖରେ ବସି ସେମାନଙ୍କ ପୁରୁଣା ଲୁଗାପଟା ତଥା ମୋଜା ଆଦି ମରାମତି କରୁଥାଏ । ପିଲାମାନେ ଖେଳ ଘର ଅପରିଷ୍କାର କଲେ ଓ୍ୱେଣ୍ଡି ପୁଣି ସେହିମାନଙ୍କୁ ଲଗାଇ ଘର ସଫା କରାଉଥାଏ । ଓ୍ୱେଣ୍ଡି ମଝିରେ ବସି ସିଲେଇ କରୁଥାଏ । ପିଲାମାନେ ତା' ଚାରିପଟେ ଖୁସିରେ ଗୀତ ଗାଇ ନାଚୁଥାନ୍ତି । ଗୀତ ଗାଇ ନାଚି ନାଚି, ସତେ ଯେପରି ସେମାନେ ସେମାନଙ୍କ ନିଜ ନିଜ ଛାଇକୁ ଦେଖି ଡରିଯାଉଛନ୍ତି ସେପରି ଅଭିନୟ ମଧ୍ୟ କରୁଥାନ୍ତି । ଶୋଇବା ସମୟ ହେଲେ ଓ୍ୱେଣ୍ଡି ପିଲା-ମାନଙ୍କୁ ନିଜ ନିଜ ଜାଗାରେ ଯାଇ ଶୋଇଯିବା ପାଇଁ କହେ ଏବଂ ଶୋଇବା ସମୟରେ ସେମାନଙ୍କୁ ତାଙ୍କ ପ୍ରିୟ ଗପଟି କହିବା ଆରମ୍ଭ କରେ । କିନ୍ତୁ ଏହି ଗପଟି ପିଟର୍‌କୁ ଜମା ଭଲ ଲାଗେନାହିଁ । ଓ୍ୱେଣ୍ଡି ଯେତେବେଳେ ଗପ କହିବା ଆରମ୍ଭ କରେ ପିଟର୍ ସେ ଘର ଛାଡ଼ି ଚାଲିଯାଏ କିମ୍ବା କାନରେ ହାତ ଦେଇ ବସେ । କିନ୍ତୁ ସେଦିନ ଯେତେବେଳେ ଓ୍ୱେଣ୍ଡି ସେ ଗପଟି କହିବା ଆରମ୍ଭ କଲା ପିଟର୍ ମଧ୍ୟ ସେଠାରେ ବସି ମନ ଧ୍ୟାନ ଦେଇ ଶୁଣିଲା ।

ଓ୍ୱେଣ୍ଡି ସେହି ଗପଟିରେ କହେ, ଗୋଟିଏ ଶୀତଦିନ ସନ୍ଧ୍ୟାରେ ଶ୍ରୀ ଓ ଶ୍ରୀମତୀ ଡାର୍ଲିଙ୍ଗଙ୍କ ପିଲାମାନେ ହଠାତ୍ ଘରୁ ଉଭାନ୍ ହୋଇ-

ଯାଇଥିଲେ ସେ ବିଷୟ ବର୍ଣ୍ଣନାକରି ପିଲମାନଙ୍କୁ କହିଲ, "ବର୍ତ୍ତମାନ ତୁମେମାନେ ଭାବ ଯେ ସେ ବାପା, ମା' ଦୁହେଁ କପରି ଦୁଃଖରେ ଭାଙ୍ଗିପଡ଼ିଥିବେ, ଯେତେବେଳେ ଜାଣିଥିବେ ଯେ ତାଙ୍କର ପୁଅଝିଅ-ମାନେ କେଉଁଆଡ଼େ ଚାଲିଯାଇଛନ୍ତି ।"

ପିଲମାନେ ସମସ୍ତେ ଏକା ସାଙ୍ଗରେ ଦୁଃଖ ପ୍ରକାଶ କରି "ଓଃ" କହିଉଠିଲେ; କିନ୍ତୁ ସେମାନେ ହୃଦୟରେ ଟିକିଏ ହେଲେ ସେହି ଦୁଃଖିନୀ ମା', ବାପାଙ୍କ ପ୍ରତି ଦୁଃଖ ଅନୁଭବ କରୁନଥିଲେ । ଓ୍ୱେଣ୍ଡି ପୁଣି କହିଲ, "ଖାଲି ଶେଯଗୁଡ଼ିକୁ ଦେଖି ସେମାନଙ୍କ ଅବସ୍ଥା କ'ଣ ହୋଇଥିବ ଚିନ୍ତା କର ତ ?" ପୁଣି ସମସ୍ତେ ଦୁଃଖ ହେଲ ଭଳି ଅଭିନୟ କରି "ଓଃ" ବୋଲି କହିଉଠିଲେ ।

ଜାଆଁଳା ଭାଇ ଦୁଇଜଣଙ୍କ ଭିତରୁ ଜଣେ ହସି ହସି କହିଲ, "ଏହା ପ୍ରକୃତରେ ଖୁବ୍ ଦୁଃଖର କାହାଣୀ ।" ତା'ପରେ ହିଁ ଶ୍ରୀୟୁକ୍ତି କହିଲ, "ଆଉ କ'ଣ ତୁ ଭାବୁଚୁ ଭାରି ହସ ଖୁସିର କାହାଣୀଟିଏ ହୋଇଥିବ ବୋଲି ।"

ଓ୍ୱେଣ୍ଡି ତା'ପରେ ପିଲମାନଙ୍କୁ କହିଲ, "ତୁମେମାନେ ମା'ର ସ୍ନେହ କେମିତିକା ଜିନିଷ ଜାଣିନାହିଁ । ଯଦି ଜାଣିଥାନ୍ତ, ତେବେ ତୁମେ ଭୟ କ'ଣ ଜାଣିନଥାନ୍ତ ।" ବର୍ତ୍ତମାନ ଓ୍ୱେଣ୍ଡି, କାହାଣୀର ଯେଉଁ ଭାଗଟି ପିଟର୍‌କୁ ସବୁଠାରୁ ବେଶି ଖରାପ ଲଗେ ତାହା ବର୍ଣ୍ଣନା କରିବା ଆରମ୍ଭ କଲ ।

ମିଣ୍ଟୁ ଟିଣ୍ଟୁକୁ ତକିଆରେ ମାରୁ ମାରୁ କହିଲ, "ମତେ ମା' ସ୍ନେହ ବହୁତ ଭଲ ଲଗେ । ଟିଣ୍ଟୁ, ତତେ କଣ ମଧ ମା' ସ୍ନେହ ବହୁତ ଭଲ ଲଗେ ?" ଟିଣ୍ଟୁ ତକିଆ ଧରି ଓଲଟା ମିଣ୍ଟୁକୁ ମାରୁ ମାରୁ କହିଲ, "ହଁ ନିଶ୍ଚୟ । ମା'ର ସ୍ନେହ କାହାକୁ ଭଲ ନ ଲଗେ ।"

ୱେଣ୍ଡି ପୁଣି ଗପ କହିବା ଆରମ୍ଭକରି କହିଲା, "ବର୍ତ୍ତମାନ ଗପର ଶେଷ ଭାଗ ଶୁଣ । ଆମ ଗପର ନାୟିକା ଜାଣିଥିଲା ଯେ ତା' ମା' ସବୁବେଳେ ତାଙ୍କ ଝରକା ତା' ପାଇଁ ଖୋଲି ରଖିଥିବେ । କାରଣ ହଠାତ୍ ଉଭାନ୍ ହୋଇଯାଇଥିବା ତାଙ୍କ ପିଲାମାନେ ଦିନେ ନା ଦିନେ ଫେରିଆସିବେ ବୋଲି ସେ ଆଶାକରି ବସିଥିବେ ।" ୱେଣ୍ଡି ତା' ଗପଟି କହିବା ଶେଷ କଲାବେଳକୁ ପିଟର୍ ଦୁଃଖରେ କୁଁ କୁଁ ହୋଇ କାନ୍ଦୁଥିବା ସେ ଶୁଣିପାରିଲା । ୱେଣ୍ଡି ତା' ପାଖକୁ ଦୌଡ଼ିଯାଇ ପଚାରିଲା—"ପିଟର୍ ତୋର କ'ଣ ହେଲା ? କାହିଁକି କାନ୍ଦୁଛୁ ? କ'ଣ ତୋ ଦେହ ଭଲ ଲାଗୁ ନାହିଁ କି ?"

ପିଟର୍ ଆଖି ପୋଛି ୱେଣ୍ଡିକୁ କହିଲା, "ୱେଣ୍ଡି ତୁ ମା'ମାନଙ୍କ ସ୍ନେହ ବିଷୟରେ ଯାହା ସବୁ କହିଲୁ ତାହା ସବୁ ମିଛ । ବହୁଦିନ ପୂର୍ବେ ମୁଁ ମଧ୍ୟ ଠିକ୍ ତୋ'ଭଳି ଭାବୁଥିଲି ଯେ ମୋ ମା' ସବୁବେଳେ ମୋ ପାଇଁ ଘରର ଝରକା ଖୋଲି ରଖିଥିବେ । ତେଣୁ ମୁଁ ମାସ ମାସ ଧରି ଅଜଣା ରାଇଜରେ ମଜା କରି ବୁଲିଲି । ହଠାତ୍ ଦିନେ ଘରକୁ ଫେରିଯାଇ ଦେଖିଲି ଯେ ଘରର ଝରକାଟି ବନ୍ଦ ହୋଇ-ଯାଇଛି ଏବଂ ମା' ମତେ ସମ୍ପୂର୍ଣ୍ଣରୂପେ ଭୁଲିଯାଇଛନ୍ତି ଓ ମୋ ଶେଯରେ ଆଉ ଗୋଟିଏ ଛୋଟିଆ ପୁଅ ମଜାରେ ଶୋଇଛି ।"

ପିଟର୍‌ର ଏପରି କଥା ଶୁଣି ୱେଣ୍ଡି ତା' ନିଜ ବିଷୟ ଭାବି ଖୁବ୍ ଡରିଗଲା ଏବଂ ମନେ ମନେ ଦୁଃଖରେ ଭାଙ୍ଗିପଡ଼ିଲା । ହଠାତ୍ ତା' ମନକୁ ଏକ ଭୟଙ୍କର ଚିନ୍ତା ଆସିଲା । ଭାବିଲା, "ମା' ନିଶ୍ଚୟ ଆମ-ମାନଙ୍କୁ ହରାଇ ଦୁଃଖରେ କାନ୍ଦୁଥିବେ ।" ତା'ପରେ ୱେଣ୍ଡି ସମସ୍ତଙ୍କୁ କହିଲା, "ଯଦି ଆମମାନଙ୍କର ଘରକୁ ଫେରିବାର ଡେରି ହୋଇଯାଏ ଏବଂ ଗଲାବେଳକୁ ଆମ ଶେଯରେ ଆଉ ଅନ୍ୟ ପିଲାମାନେ ଶୋଇ-ଥିବା ଦେଖିବା, ତେବେ ଆମେ କ'ଣ କରିବା ? ସେମାନଙ୍କୁ ଆମ

ପୋଷା କୁକୁର 'ନାନା' ଗାଧୋଇ ଦେଉଥିବ ଏବଂ ପୋଷାକ ପିନ୍ଧେଇ ଦେଉଥିବ । ତାହା ଦେଖି ଆମେ ତ ସହି ପାରିବୁନି । ତେଣୁ ବର୍ତ୍ତମାନ ଏହି ମୁହୂର୍ତ୍ତରେ ହିଁ ଆମମାନଙ୍କୁ ଘରକୁ ଫେରିଯିବା ଉଚିତ ହେବ ।"

ୱେଣ୍ଡିର ଫେରିଯିବା କଥା ଶୁଣି ପିଲାମାନେ ଦୁଃଖରେ ସମସ୍ତେ ତା' ଆଡ଼େ ଅପଲକ ନେତ୍ରରେ ଚାହିଁରହିଲେ । ୱେଣ୍ଡି ଫେରିଯିବ ଏବଂ ସେମାନେ ତାଙ୍କ ପ୍ରିୟ ମା'କୁ ହରାଇ ବସିବେ ବୋଲି ଭାବି ପିଲାମାନେ ଦୁଃଖରେ ଭାଙ୍ଗିପଡ଼ିଲେ । ଏହାଛଡ଼ା ୱେଣ୍ଡି ସେମାନଙ୍କୁ ସାଙ୍ଗରେ ଯିବା ପାଇଁ ଡାକିନଥିବାରୁ ସେମାନେ ମନେ ମନେ ଦୁଃଖିତ ହୋଇଥିଲେ ।

ୱେଣ୍ଡି ତା'ପରେ ସମସ୍ତଙ୍କୁ କହିଲା, "ମୋ ପ୍ରିୟ ପିଲାମାନେ, ତୁମେମାନେ ଯଦି ମୋ ସାଙ୍ଗରେ ଆମ ଘରକୁ ଆସନ୍ତ, ତାହାହେଲେ ଖୁବ୍ ମଜା ହୁଅନ୍ତା । ତୁମମାନଙ୍କୁ ପୋଷ୍ୟପୁତ୍ର କରିନେବା ପାଇଁ ମୁଁ ମୋ ମା', ବାପାଙ୍କୁ ମନାଇ ଦିଅନ୍ତି । ୱେଣ୍ଡି ଏ କଥାଟି କେବଳ ପିଟର୍ ଉଦ୍ଦେଶ୍ୟରେ ହିଁ କହୁଥାଏ । କିନ୍ତୁ ପିଲାମାନେ ଏହି ନିମନ୍ତ୍ରଣଟି ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ଭାବି ଖୁସିରେ ନାଚିଉଠିଲେ । ଅନ୍ୟସବୁ ପିଲାମାନଙ୍କ ପରି ସେମାନେ ମଧ୍ୟ ସତ, ସତ ମା', ବାପା ପାଇବେ ଏବଂ ସମସ୍ତଙ୍କ ପରି ଘରେ ରହିବେ ଭାବି ଖୁସିରେ ଅଧୀର ହୋଇ-ଉଠିଲେ । ଆଖି ପିଛୁଳାକେ ସେମାନେ ତାଙ୍କ ଲୁଗାପଟା ବନ୍ଧାବନ୍ଧି କରି ଯିବା ପାଇଁ ପ୍ରସ୍ତୁତ ହୋଇପଡ଼ିଲେ ।

ପିଟର୍ କିନ୍ତୁ ୱେଣ୍ଡି ସାଙ୍ଗରେ ତା' ଘରକୁ ଯିବାପାଇଁ ରାଜିହେଲା ନାହିଁ କି ୱେଣ୍ଡିକୁ ପିଲାଙ୍କ ସହିତ ଛାଡ଼ିବାକୁ ଇଚ୍ଛା କଲା ନାହିଁ । ଏହାଛଡ଼ା ସେ କେବେହେଲେ ବୟସ୍କ ହେବା ପାଇଁ ଚାହୁଁନଥିଲା । ସେ ଭଲରୂପେ ଜାଣିଥିଲା ଯେ, ଯଦି ସେ ଅଜଣା ରାଇଜରୁ ଚାଲିଯାଏ

ତେବେ ତାଙ୍କୁ ଦିନେ ନା ଦିନେ ବୁଢ଼ା ହେବାକୁ ପଡ଼ିବ । ଏହା ସେ ସହ୍ୟକରିପାରିବ ନାହିଁ । ସବୁଦିଗରୁ ଭାବି ସେ ସେହି ଅଜଣା ରାଇଜରେ ସବୁଦିନ ରହିବା ପାଇଁ ସଙ୍କଳ୍ପ କଲା । ୱେଣ୍ଡି ସବୁଦିନ ପିଟର୍‌କୁ ନିୟମିତଭାବେ ଔଷଧ ଖୁଆଇ ଦେଉଥିଲା । ୱେଣ୍ଡି ପିଟର୍‌କୁ ପ୍ରତିଜ୍ଞା କରାଇଲା ଯେ, ତା ଅନୁପସ୍ଥିତିରେ ମଧ୍ୟ ସେ ଯେପରି ସବୁଦିନ ରାତିରେ ନିୟମିତ ଭାବେ ଔଷଧ ଖାଏ ।

ସେହି ସମୟରେ ହଠାତ୍ ଘର ଉପରେ ପାଟିତୁଣ୍ଡ ଶୁଣାଗଲା । ଜଳଦସ୍ୟୁମାନେ ମାଟି ଉପରେ ପିଲାମାନଙ୍କୁ ଜଗିରହିଥିବା ଲୋହିତ ଭାରତୀୟମାନଙ୍କ ଉପରେ ଅତର୍କିତ ଆକ୍ରମଣ କରିଥିଲେ । ଆଖପାଖ ସ୍ଥାନ ଆର୍ତ୍ତଚିତ୍କାର ତଥା ଖଣ୍ଡା, ତରବାରୀ ଶବ୍ଦରେ କମ୍ପି ଉଠିଲା । ମାଟିତଳ ଘରେ ପିଲାମାନେ ଭୟରେ ଚୁପ୍‌ଚାପ୍ ହୋଇ ବସିଥାନ୍ତି । ମନେହେଉଥାଏ ସତେ ଯେପରି ଶବ୍ଦ ହେବ ବୋଲି ସେମାନେ ନିଜର ନିଃଶ୍ୱାସ ବନ୍ଦ କରିଦେଇଛନ୍ତି ଏବଂ ଭୟରେ କିଛି ସମୟ ପାଇଁ ଜଡ଼ ପାଲଟି ଯାଇଛନ୍ତି ।

## ଜଳଦସ୍ୟୁଙ୍କ ଆକ୍ରମଣ

ଜଳଦସ୍ୟୁମାନେ ଅତର୍କିତ ଆସି ଲୋହିତ ଭାରତୀୟମାନଙ୍କ ଉପରେ ଆକ୍ରମଣ କରିଦେଲେ । ଅତର୍କିତ ଆକ୍ରମଣ ହୋଇଥିବାହେତୁ ଲୋହିତ ଭାରତୀୟମାନେ ହଠାତ୍ କଣ କରିବେ ଠିକ୍ କରିପାରିଲେ ନାହିଁ ଏବଂ ଯୁଦ୍ଧ କରିବା ପାଇଁ ବିଶେଷ ସମୟ ମଧ୍ୟ ପାଇଲେ ନାହିଁ । ଅନେକ ଲୋହିତଭାରତୀୟ ଜଳଦସ୍ୟୁଙ୍କ ହାତରେ ମଲେ । ଏଣେ ଜଳଦସ୍ୟୁଙ୍କ

ନେଇ ଜେମ୍‌ସ ହୁକ୍ ପିଲଙ୍କ ଘରର ଧୂଆଁ ନଳୀ ପାଖରେ କାନ ଦେଇ ଶୁଣିଲା ଯେ ପିଟର୍ ପିଲମାନଙ୍କୁ କଣ କହୁଛି । ପିଟର୍ ପିଲ-ମାନଙ୍କୁ କହୁଥାଏ ଯେ "ଯଦି ଲୋହିତ ଭାରତୀୟମାନେ ଜିଣିଯିବେ, ତେବେ ସେମାନେ ତାଙ୍କ ଡୋଲ୍ ବଜାଇ ଆମକୁ ଜୟବାର୍ତ୍ତା ସୂଚନା ଦେବେ । ଡୋଲର ଶବ୍ଦ ଶୁଣିଲେ ଆମେ ଜାଣିବା ଯେ ଲୋହିତ ଭାରତୀୟମାନେ ଜିଣିଗଲେ ।"

ଏହା ଶୁଣି ଜେମ୍‌ସ ହୁକ୍‌ର ଆନନ୍ଦର ସୀମା ରହିଲା ନାହିଁ । ସେ ମନେ ମନେ ଗୋଟିଏ କୁର ବୁଦ୍ଧି ପାଞ୍ଚିଲା । ଯୁଦ୍ଧରେ ଅଧେ ଲୋହିତଭାରତୀୟ ମରିଯାଇଥିଲେ ଏବଂ ଆଉ ଯାହା ବଞ୍ଚିଗଲେ ସେମାନେ ନିଜ ପ୍ରାଣ ବଞ୍ଚାଇ ଚାଲିଯାଇଥିଲେ । ସେମାନଙ୍କ ମଧ୍ୟରୁ ଜଣେ ତାର ଡୋଲଟି ସେଠାରେ ଛାଡ଼ି ଚାଲିଯାଇଥିଲା । ଜେମ୍‌ସ ହୁକ୍ ସେଇ ଡୋଲଟି ଆଣି ଖୁବ୍ ଜୋର୍‌ରେ ପିଟିଲା ।

ଡୋଲ୍ ଶବ୍ଦ ଶୁଣି ପିଲମାନେ ଭାବିଲେ ଯେ ଜଳଦସ୍ୟୁମାନେ ହାରିଗଲେ ଏବଂ ତାଙ୍କ ମିତ୍ର ଲୋହିତଭାରତୀୟମାନେ ଜିଣିଗଲେ । ତେଣୁ ସେମାନେ ଆନନ୍ଦରେ ଚିତ୍କାର କରିଉଠିଲେ ଏବଂ ଆଉ କିଛି ବିପଦ ନାହିଁ ବୋଲି ଭାବି ୱେଣ୍ଡି ସାଙ୍ଗରେ ଯିବାପାଇଁ ବାହାରି-ପଡ଼ିଲେ । ଖୁସିମନରେ ଜଣେ ଜଣେ ହୋଇ ନିଜ ଲୁଗାପଟା ଧରି, ପିଟର୍‌ଠାରୁ ବିଦାୟ ନେଇ ଗଛ ଭିତରେ ତିଆରି କରିଥିବା ସିଡ଼ି ଦେଇ ଉପରକୁ ଆସିଲେ । ସେହିଠାରେ ଜଳଦସ୍ୟୁମାନେ ଚାଲାକ୍ କରି ଲୁଚି ଠିଆ ହୋଇଥାନ୍ତି ଏବଂ ଯିଏ ଉପରକୁ ଆସୁଥାଏ, ତାକୁ ମାଡ଼ିବସି ବାନ୍ଧି ପକାଉଥାନ୍ତି ।

ଜଳଦସ୍ୟୁମାନେ ପିଲମାନଙ୍କର ହାତ ଗୋଡ଼ ବାନ୍ଧି ମୁହଁରେ ଭୁଲାବଣ୍ଡା ଦେଇ ସେମାନଙ୍କୁ ୱେଣ୍ଡି ପାଇଁ ତିଆରି ହୋଇଥିବା ଛୋଟ ଘର ଭିତରେ ପକାଇଦେଲେ । ତା'ପରେ ଚାରିଟା ଜଳଦସ୍ୟୁ

ସେ ଘରଟିକୁ କାନ୍ଧରେ ଉଠାଇ ବଣ ଭିତରେ ନେଇ ଚାଲିଲେ । ପିଲାମାନେ ସେ ଘର ଭିତରେ ପଡ଼ି କାନ୍ଦୁଥାନ୍ତି । ବାହାରେ ଏହା କାହାକୁ ଶୁଭୁ ନଥାଏ । କାରଣ ବାହାରେ ଜଳଦସ୍ୟୁମାନେ ଏତେ ଦିନ ପରେ ଏହି ପିଲାମାନଙ୍କୁ ବନ୍ଦୀ କରିପାରିଥିବାରୁ ଖୁସିହୋଇ ବଡ଼ପାଟିରେ ଗୀତଗାଇ ଚାଲୁଥାନ୍ତି । ଜଳଦସ୍ୟୁମାନଙ୍କ କାନ୍ଧରେ ଥିବା ସେଇ ଶ୍ରେଷ୍ଠ ଘରଟିର ଧୂଆଁନଳୀ ଦେଇ ସରୁ ଧୂଆଁ ଧାରଟି ଉପରକୁ ଉଠି ଚାଲିଥାଏ । ତାହା ଦେଖିଲେ ମନେହେଉଥିଲା ସତେ ଯେପରି ସାହସୀ ଧୂଆଁ, ଦୁଷ୍ଟ ଜଳଦସ୍ୟୁମାନଙ୍କୁ ନ ଡରି ନେତାଙ୍କୁ ଅବଜ୍ଞା କରି ଉପରକୁ ଉଡ଼ିଚାଲିଛି ।

ଜଳଦସ୍ୟୁ ଜେମ୍ସ ହୁକ୍ ଏହି କାମଟି ଏତେ ଅଶ୍ଚନକ ତଥା ଚତୁରତାର ସହିତ ଏବଂ ନିଃଶବ୍ଦରେ କରିଲେ ଯେ, ପିଟର୍ ଏହାର ସୋରଶବ୍ଦ ମଧ୍ୟ ପାଇପାରିଲାନାହିଁ । ପିଟର୍‌ର ସାଙ୍ଗମାନେ ସେତେବେଳେ କି ଦୁଃଖରେ ଥିଲେ ସେ କିଛି ଜାଣିପାରିନଥିଲା । ପିଟର୍ ସବୁଦିନ ଭଳି ଯେଉଁ ଖଟରେ ସବୁ ପିଲାମାନେ ଶୁଅନ୍ତି ସେଠାକୁ ଶୋଇବାକୁ ଚାଲିଗଲେ । ବର୍ତ୍ତମାନ ଜେମ୍ସ ହୁକ୍ ତା'ର ପ୍ରଧାନଶତ୍ରୁ ପିଟର୍‌କୁ ଧରିବା ପାଇଁ ଗଛ ଭିତରେ ତିଆରି ହୋଇଥିବା ସିଡ଼ି ଭିତରଦେଇ ଗୁରୁଣ୍ଡି ଗୁରୁଣ୍ଡି ମାଟିତଳେ ତିଆରି ହୋଇଥିବା ଘର ଆଡ଼େ ଚାଲିଲା । ପିଟର୍ ଭଳି ଗୋଟିଏ ଶ୍ରେଷ୍ଠ ପିଲା ପଛରେ ରାକ୍ଷସ ଭଳି ଗୋଟିଏ ଜଳଦସ୍ୟୁ କାହିଁକି ସେ ଗୋଡ଼ାଇଛି ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ହଁ, ଏହା ସତ । ଥରେ ପିଟର୍ ଏହି ଜଳଦସ୍ୟୁର ହାତଟିକୁ କାଟି ଗୋଟିଏ କୁମ୍ଭୀରକୁ ଖୁଆଇ ଦେଇଥିଲା । କୁମ୍ଭୀରକୁ ଜଳଦସ୍ୟୁର ମାଂସ ଖୁବ୍ ମିଠା ଲାଗିଥିଲା । ତେଣୁ ଏବେ ସୁଦ୍ଧା ସେହି କୁମ୍ଭୀରଟି ତା'ଶରୀରର ବାକି ମାଂସତକ ଖାଇବା ପାଇଁ ତା' ପଛେ ପଛେ ଗୋଡ଼ାଇଛି ।

ପିଟର୍‌ର ଚତୁରତା ଜେମ୍‌ସ ହୁକ୍ ସହ୍ୟ କରିପାରେନାହିଁ । ଏପରିକ ରାତ୍ରରେ ମଧ୍ୟ ଶାନ୍ତିରେ ଶୋଇପାରେ ନାହିଁ । ତାକୁ ମନେ-ହୁଏ ସତେ ଯେପରି ସେ ଯନ୍ତ୍ରା ଭିତରେ ପଡ଼ୁଛି । ପିଟର୍‌କୁ ମାରିବାକୁ ସେ ସବୁବେଳେ ଉପାୟ ଖୋଜୁଥାଏ ।

ଜଳଦସ୍ୟୁ ନେତା ତା'ପରେ ପିଟର୍‌କୁ ମାରିବା ପାଇଁ ମନେ ମନେ ଗୋଟିଏ କ୍ରୁର ଉପାୟ ପାଞ୍ଚିଲା । ୱେଣ୍ଡି ଗଳ୍ପସମୟରେ ପିଟର୍‌କୁ ବାରମ୍ବାର ନିୟମିତ ଭାବେ ଔଷଧ ଖାଇବା ପାଇଁ କହିବା କଥାଟି ଜେମ୍‌ସ ହୁକ୍ ଧୂଆଁ ନଳୀ ପାଖରେ କାନଦେଇ ଶୁଣି ପାରି-ଥିଲା । ମନେ ମନେ ଭାବିଲା ପିଟର୍‌କୁ ଯନ୍ତ୍ରଣା ଦେଇ ମାରିବା ପାଇଁ ଏହା ସବୁଠାରୁ ଉତ୍ତମ ଉପାୟ ହେବ । ତା'ପରେ ଜେମ୍‌ସ ହୁକ୍ ଗୁରୁଣ୍ଡି ଗୁରୁଣ୍ଡି ଭିତରକୁ ଯାଇ ଥାକରେ ଥୁଆ ହୋଇଥିବା ପିଟର ଔଷଧ କପ୍‌ଟି ଆଣି ସେଥିରେ ଗଣି ଗଣି ପାଞ୍ଚଟୋପା ମାରାତ୍ମକ ବିଷ ଢାଳିଦେଲା । ଏପରି କରିବା ସମୟରେ ଜେମ୍‌ସ ହୁକ୍‌ର ହାତ ଥରି ଉଠିଥିଲା । କିନ୍ତୁ ଏହା ଜେମ୍‌ସ ଅତ୍ୟନ୍ତ ଖୁସି ହୋଇଯାଇଥିବାର ଅନୁଭବ କରିପାରିଲାନାହିଁ । ତା'ପରେ ଜେମ୍‌ସ ହୁକ୍ ତା' ଶତ୍ରୁକୁ ଥରେ ଘୃଣାପୂର୍ଣ୍ଣ ଦୃଷ୍ଟିରେ ଚାହିଁ ଗଛ ଭିତର ସିଡ଼ି ଦେଇ ଉପରକୁ ଉଠିଆସିଲା ।

"ଠକ୍-ଠକ୍-ଠକ୍" କିଏ ଜଣେ ପିଟର୍‌ର କବାଟରେ ଆଘାତ କରିବା ଶୁଣାଗଲା । ପିଟର୍ ଅଧା ନିଦରେ ଉଠି ପଚାରିଲା, "କିଏ ଡାକୁଛ ?" କିନ୍ତୁ, ସେ କିଛି ଉତ୍ତର ପାଇଲା ନାହିଁ । ପୁଣି ଥରେ ଠକ୍, ଠକ୍ ଶବ୍ଦ ଶୁଣାଗଲା ।

"କିଏ ତୁମେ ଡାକୁଛ ?"—ପିଟର୍ ପୁଣି ପଚାରିଲା । କିନ୍ତୁ ଏଥର ମଧ୍ୟ କିଛି ଉତ୍ତର ପାଇଲା ନାହିଁ । ପିଟର୍‌କୁ ଏହିପରି ରୋମାଞ୍ଚିତ ଘଟଣା ଖୁବ୍ ଭଲ ଲାଗେ । ସେ ଭିତରୁ ପାଟି କରି

କହିଲା "ତୁମେ କିଏ ? ଯେ ପର୍ଯ୍ୟନ୍ତ ନ କହିବ ମୁଁ କବାଟ ଜମା ଖୋଲିବି ନାହିଁ ।" ତା'ପରେ କିଛି ସମୟ ପରେ ବାହାରୁ ମଧୁର ସ୍ୱରରେ ଜଣେ କହିଲା, "ପିଟର୍ ! ଦୟାକରି ମତେ ଭିତରକୁ ଯିବାକୁ ଦିଅ ।"

ପିଟର୍ ଯେମିତି ଦୁଆର ଖୋଲିଦେଇଛି ଘୁଙ୍ଗୁରପରୀ ଉଡ଼ିଉଡ଼ି ଘର ଭିତରକୁ ପଶିଆସିଲା । ତା'ମୁହଁ ଉପରେ କଳାକାଠ ପଡ଼ିଯାଇଥିଲା ଏବଂ ତା' ପୋଷାକ ସାରା କାଦୁଅ ଦାଗସବୁ ଲାଗି-ଥାଏ । ତା'ପରେ ଘୁଙ୍ଗୁରପରୀ ପିଟର୍‌କୁ କହିଲା "ତୁମେ ଜାଣ, ଜଳଦସ୍ୟୁମାନେ ୱେଣ୍ଡି ତଥା ସବୁ ପିଲାମାନଙ୍କୁ ବନ୍ଦୀ କରି ନେଇ-ଯାଇଛନ୍ତି ।" ଘୁଙ୍ଗୁରପରୀ ପ୍ରଥମେ ପ୍ରଥମେ ୱେଣ୍ଡିକୁ ଜମା ଭଲ ପାଉ ନ ଥିଲା ଏବଂ ତାକୁ ଅନେକ ହଇରାଣ କରିଥିବାରୁ ବର୍ତ୍ତମାନ ଅନୁତାପ କରୁଥିଲା । ପିଟର୍ ଏହା ଶୁଣି ରାଗରେ ସାଙ୍ଗେ ସାଙ୍ଗେ ତା'ର ଖଣ୍ଡା ଓ ଛୁରୀ ଧରି ୱେଣ୍ଡିକୁ ଜଳଦସ୍ୟୁମାନଙ୍କ କବଳରୁ ମୁକ୍ତ କରିବାପାଇଁ ବାହାରିପଡ଼ିଲା । ପିଟର୍ ଯିବା ପୂର୍ବରୁ ତା' ଔଷଧ ଖାଇବା ପାଇଁ ଗଲା । ସେହି ସମୟରେ ପରୀଟି ଚିତ୍କାର କରି କହିଲା "ପିଟର୍ ! ସେ ଔଷଧ ଖାଅ ନାହିଁ । ସେଥିରେ ଜେମ୍‌ସ୍ ହୁକ୍ ବିଷ ମିଶାଇ ଦେଇଛି ତୁମକୁ ମାରିବାପାଇଁ ।" ପିଟର୍ ଏହା ବିଶ୍ୱାସ କଲାନାହିଁ । ଘୁଙ୍ଗୁରପରୀ ତା'କଥାରେ ଥିବା ସତ୍ୟତା ପ୍ରମାଣ କରାଇଦେବାପାଇଁ ପିଟର୍ ହାତରୁ କପ୍‌ଟି ନେଇ ନିଜେ ସବୁଯାକ ବିଷମିଶା ଔଷଧ ପିଇଦେଲା ।

ଔଷଧ ପିଇବାର କିଛି ସମୟ ପରେ ପିଟର୍ ଦେଖିଲା ଘୁଙ୍ଗୁର-ପରୀ ଧୀରେ ଧୀରେ କଳା ପଡ଼ିବାକୁ ଲାଗିଲା ଏବଂ ତା' ଦେହର ତେଜ ମଧ୍ୟ ଧୀରେ କମି ଆସିଲା । ଘୁଙ୍ଗୁରପରୀ ପିଟର୍‌ର ଜୀବନ ରକ୍ଷା କରିବାକୁ ଯାଇ ନିଜର ଜୀବନ ତ୍ୟାଗ କରିବାକୁ ପ୍ରସ୍ତୁତ ।

ପିଟର୍ ଏପରି ସମୟରେ କ'ଣ କରିବ କିଛି ବୁଝିପାରିଲାନାହିଁ । କିପରି ଝୁଙ୍ଗୁରପରୀର ଜୀବନ ରକ୍ଷା କରିବ, ତା'ର ଏକମାତ୍ର ଚିନ୍ତା । ଏହି ସମୟରେ ଝୁଙ୍ଗୁରପରୀ ଅତି କ୍ଷୀଣ ସ୍ୱରରେ କହିଲା, "ଯଦି ପୃଥିବୀର ସମସ୍ତ ପିଲା କହିବେ ଯେ ସେମାନେ ପରୀମାନଙ୍କୁ ବିଶ୍ୱାସ କରନ୍ତି ତେବେ ସେ ବଞ୍ଚିଯିବ ।"

ତତକ୍ଷଣେ ପିଟର୍ ଯାଇ ପୃଥିବୀର ସବୁ ପିଲାମାନଙ୍କୁ ଜଣାଇଦେଲା ଯେ ସେମାନେ ତାଳମାରି ପରୀମାନଙ୍କୁ ବିଶ୍ୱାସ କରନ୍ତି ବୋଲି ଜଣାଇ ଦିଅନ୍ତୁ । ପୃଥିବୀର ସବୁଆଡ଼ୁ ଏକ ସମୟରେ କରତାଳି ଧ୍ୱନି ଶୁଣାଗଲା ।

ପିଲାମାନଙ୍କର ଏହି ତାଳି ଶବ୍ଦଟି ଯାଦୁ ଭଳି କାମ ଦେଲା ଏବଂ ଝୁଙ୍ଗୁରପରୀ ସାଙ୍ଗେ ସାଙ୍ଗେ ଭଲହୋଇ ଉଠିଲା । ତା'ଦେହର ଉଜ୍ଜ୍ୱଳତା ଯାହା ଧୀରେ ଧୀରେ ମଉଳି ଯାଉଥିଲା ତାହା ପୁଣି ପୂର୍ବ ଅପେକ୍ଷା ଅଧିକ ଉଜ୍ଜ୍ୱଳ ହୋଇ ଉଠିଲା । ତା'ପରେ ପିଟର୍ ଝୁଙ୍ଗୁରକୁ ସାଙ୍ଗରେ ଧରି ଓ୍ୱେଣ୍ଡି ଓ ଅନ୍ୟ ପିଲାମାନଙ୍କୁ ଜଳଦସ୍ୟୁ-ମାନଙ୍କ କବଳରୁ ରକ୍ଷାକରିବାପାଇଁ ବାହାରି ପଡ଼ିଲା ।

## ଜଳଦସ୍ୟୁଙ୍କ ଜାହାଜ

ବିଚରା ନିରୀହ ପିଲାମାନଙ୍କୁ ଦସ୍ୟୁମାନେ ନେଇ ତାଙ୍କ ଜାହାଜର ଗୋଟିଏ ଅନ୍ଧାରୁଆ ଏବଂ ମଇଳା କୋଣରେ ବାନ୍ଧି ପକାଇଦେଲେ । ଜାହାଜଟି ଦେଖିବାକୁ ଖୁବ୍ ଭୟଙ୍କର ଦିଶୁଥାଏ । ତା'ର ପାଲଗୁଡ଼ିକ କଳାରଙ୍ଗର ଏବଂ ମାସ୍ତୁଲ ଉପରେ ଉଡ଼ୁଥିବା ପତାକାରେ

ଦୁଇଟା ହାଡ଼ ଏବଂ ମଣିଷ ଖପୁରିର ଚିହ୍ନ ଅଙ୍କାହୋଇଥାଏ । ଦସ୍ୟୁସର୍ଦ୍ଦାର ହୁକ୍ ଜାହାଜର ଡେକଉପରେ ଖୁସିରେ ପଦଚାରଣ କରୁଥାଏ । କହୁଥାଏ—"ହାଃ—ହାଃ—ଏଥର ମୋ କବଳରୁ ଯିବେ କୁଆଡ଼େ ? ଆରେ, ସେ ପିଲାଗୁଡ଼ାକୁ ଦଉଡ଼ିରେ ଭଲ କରି ବାନ୍ଧି ଦେଇଛ ତ ?" ତାକୁ ସ୍ମୀ କହିଲା, "ହଁ ସର୍ଦ୍ଦାର ।"

ହୁକ୍ ପାଟିକରିଉଠିଲା "ସେମାନଙ୍କୁ ଦଉଡ଼ିରେ ବାନ୍ଧି ମୋ ସାମନାକୁ ଆଣ ।" କିଛି ସମୟ ପରେ ବନ୍ଦୀମାନଙ୍କୁ ହୁକ୍‌ର ଆଦେଶରେ ଡେକ୍ ଉପରକୁ ଅଣାଗଲା, ଓ୍ୱେଣ୍ଡିକୁ କିନ୍ତୁ ସେମାନଙ୍କ ସାଙ୍ଗରେ ଅଣାଯାଇ ନଥାଏ । ପିଲାମାନଙ୍କର ହାତ ଗୋଡ଼ରୁ ଦଉଡ଼ି ଫିଟାଇ ଦିଆଗଲା । ଦସ୍ୟୁସର୍ଦ୍ଦାର ହୁକ୍ ତାଙ୍କ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଚାହିଁ ମନେ ମନେ କ'ଣ ଭାବି ହଠାତ୍ କହିଲା, "ତୁମ ଛଅଜଣଯାକଙ୍କୁ ଆଜିରାତିରେ ପଟା ଉପରେ ଚାଲିବାକୁ ପଡ଼ିବ । ତା' ପୂର୍ବରୁ କହିଦେଉଛି ମୋର ଦୁଇଟା ଚାକର ପିଲା ମଧ୍ୟ ଦରକାର । ତୁମ ଭିତରୁ କେଉଁ ଦୁଇଜଣ ଚାକର ହେବ ?"

ପିଲାମାନେ ପଟା ଉପରେ ଚାଲିବା କଥାଟା ବୁଝିପାରିଲେ ନାହିଁ । କିନ୍ତୁ ହୁକ୍ ବୁଝାଇଦେଲା ଯେ ଗୋଟିଏ ଅତି କମ୍ ଓସାରର କାଠ ପଟା ଉପରେ ଚାଲିବାକୁ ହେବ । ଯଦି ଟିକିଏ ଏପାଖ ସେପାଖ ହେବ ତେବେ ତଳେ ସମୁଦ୍ରରେ ପଡ଼ି ବୁଡ଼ିଯିବ । ତା'ପରେ ହୁକ୍, ଜନ୍ ଡାର୍ଲିଂ ଆଡ଼େ ଚାହିଁ କହିଲା, "କିରେ ପିଲା ! ତୁ ତ କ'ଣ ଭରି ଚାଲାଖ୍ ଜଣାପଡୁଛୁ । ତୁ ଆମ ଦଳରେ ମିଶିବୁ କି ?"

ଜନ୍ ଭାବିଲା ଏ ଡକାୟତଟା ମୋ ମନକଥା କିପରି ଜାଣିପାରିଲା ? ଡରି ଡରି କହିଲା, "ବହୁତ ଦିନ ତଳେ ମୁଁ ମଧ୍ୟ ଜଳଦସ୍ୟୁ ହେବା ପାଇଁ ଭାବିଥିଲି । ମୁଁ ମୋ ନାଁ 'ରକ୍ତମୁଖା' ଦେବା ପାଇଁ ସ୍ଥିର କରିଥିଲି ।"

"ଆରେ ବାଃ ମନ୍ଦ ନୁହେଁ ତ । ତୁ ଯଦି ଆମ ସାଙ୍ଗରେ ମିଶିବୁ ତେବେ ସେଇ ନାଁ ଦିଆଯିବ । ପଟା ଉପରେ ଚାଲିବା ଆବଶ୍ୟକ ହେବନାହିଁ ।"

ଜନ୍, ମାଇକେଲ୍‌କୁ ଧିରେ ପଚାରିଲା—"ତୁ କ'ଣ ଭାବୁଛୁ ?" ତା'ପରେ ମାଇକେଲ୍, ଜଳଦସ୍ୟୁ ଜେମ୍‌ସକୁ ପଚାରିଲା, "ମୁଁ ଯଦି ଦସ୍ୟୁ ଦଳରେ ମିଶେ ମୋ ନାଁ କ'ଣ ଦିଆଯିବ ?"

"କୃଷ୍ଣମୁଖ ।"

ମାଇକେଲ୍‌କୁ ନାଁ ଟା ପସନ୍ଦ ହେଲା । ସେ କିନ୍ତୁ ଚାହୁଁଥିଲା ଜନ୍ ପ୍ରଥମେ ନିଷ୍ପତ୍ତି କରୁ ସେ ସେମାନେ ଦସ୍ୟୁମାନଙ୍କ ସାଙ୍ଗରେ ମିଶିବେ ନା ନାହିଁ । ଜନ୍ ମଧ୍ୟ ଠିକ୍ ସେଇଆ ଭାବୁଥିଲା ।

ଜନ୍ ମାଇକେଲ୍‌କୁ ପଚାରିଲା, "ଆମେ ଯଦି ତାଙ୍କୁ ଦଳରେ ମିଶୁ ତା'ହେଲେ କ'ଣ ଦେଶର ଆଇନକୁ ଅବମାନନା କରିବା ନାହିଁ ?" ହୁକ୍ ହାତକୁ ବାଡ଼େଇ ରାଗିଯାଇ କହିଲା, "ତୁମକୁ ଏ ଦେଶର ରାଜା ଏବଂ ଆଇନ୍ ବିରୁଦ୍ଧରେ ଶପଥ ନେବାକୁ ପଡ଼ିବ ।" ଜନ୍, ଏକଥା ଶୁଣି ବିରକ୍ତ ହୋଇ ସାମନାରେ ପଡ଼ିଥିବା ଟିଣ ଡବାଟାକୁ ଗୋଇଠାଏ ମାରି କହିଲା, "ତାହାହେଲେ ମୁଁ ତୁମ ଦଳରେ ମିଶିବି ନାହିଁ ।" ମାଇକେଲ୍ ମଧ୍ୟ ସେଇଆ କହିଲା ।

ଦସ୍ୟୁମାନେ ରାଗିଯାଇ ପିଲାମାନଙ୍କ ମୁହଁରେ ପୁଣି କନାଖଣ୍ଡା ବାନ୍ଧି-ଦେଲେ । ହୁକ୍ ଚିତ୍କାର କଲା—"ତୁମମାନଙ୍କ କାଳ ପୂରି ଆସିଛି । ଆରେ, ସେମାନଙ୍କ ମା'କୁ ଉପରକୁ ନେଇଆସ ଏବଂ କାଠପଟାଟା ପ୍ରସ୍ତୁତ କର ।" ପିଲାଗୁଡ଼ାକ ଏ ଗର୍ଜନ ଶୁଣି ଏବଂ କାଠପଟା ଉପରେ ଚାଲିବା କଥା ଭାବି ଡରରେ ଥରିଉଠିଲେ । କିନ୍ତୁ ଯେତେ-ବେଳେ ୱେଣ୍ଡିକୁ ଉପରକୁ ଅଣାଗଲା, ସମସ୍ତେ ବାହାରେ ପ୍ରକାଶ କଲେ ଯେପରି ସେମାନେ ଆଦୌ ଡରିନାହାନ୍ତି ।

ୱେଣ୍ଡି ଜଳଦସ୍ୟୁମାନଙ୍କୁ ଯେ କେତେ ଘୃଣା କରୁଥିଲା ତାହା କଳ୍ପନା କରି ହେବନାହିଁ । କିନ୍ତୁ ପିଲମାନେ ଜଳଦସ୍ୟୁଙ୍କର ବେପରୁଆ ଜୀବନଯାପନ ଦେଖି ସାମାନ୍ୟ ଉତ୍ସାହିତ ହେଉଥିଲେ । ୱେଣ୍ଡିକୁ ଦସ୍ୟୁମାନଙ୍କ କଥା ବା ତାଙ୍କ ଜାହାଜ ମୋଟେ ଭଲ ଲାଗୁନଥାଏ । ଜାହାଜଟା ବୋଧହୁଏ କେତେ ବର୍ଷ ଧରି ସଫା କରାଯାଇ ନ ଥିଲା । ଝରକାର କାଚଗୁଡ଼ାକରେ ଏତେ ମଇଳା ଲାଗିଥାଏ ଯେ ତାକୁ ଦେଖିଲେ ବାନ୍ତିମାଡ଼ୁଥାଏ । ପିଲମାନେ ୱେଣ୍ଡିକୁ ଦେଖି ତା' ଚାରି-ପଟେ ଘେରିଗଲେ । ବର୍ତ୍ତମାନ ୱେଣ୍ଡିର ଏକମାତ୍ର ଚିନ୍ତା ହେଲା କିପରି ଏମାନଙ୍କୁ ଦସ୍ୟୁମାନଙ୍କ କବଳରୁ ରକ୍ଷାକରାଯିବ ।

ତାକୁ ସର୍ଦ୍ଦାର ହୁକ୍ ଥଟ୍ଟାଳିଆ ସ୍ୱରରେ ୱେଣ୍ଡିକୁ କହିଲା, "ସୁନ୍ଦରୀ, ତୁମେ ତାହାହେଲେ ବର୍ତ୍ତମାନ ଏ ପିଲାଙ୍କର କାଠ ପଟା ଉପରେ ଚାଲିବା ଦୃଶ୍ୟ ଉପଭୋଗ କରିବାକୁ ଆସିଛ ?" ୱେଣ୍ଡି ଭୟଙ୍କର ଭାବରେ ରାଗିଯାଇ ହୁକ୍‌କୁ ଏପରି ଚାହିଁଲା ଯେ ହୁକ୍ ଭଳି ଦୁଷ୍ଟ ଜଳଦସ୍ୟୁର ଛାତି ମଧ୍ୟ ଟିକିଏ ଦବିଗଲା । କିନ୍ତୁ କିଛି ସମୟ ପରେ ପୁଣି ପାଟିକରି କହିଲା, "ସମସ୍ତେ ଚୁପ୍ ରୁହ । ବର୍ତ୍ତମାନ ଏଇ ପିଲାଙ୍କ ମା' ସେମାନଙ୍କୁ ଶେଷ ବିଦାୟ ବାର୍ତ୍ତା ଜଣାଇବ ।

ୱେଣ୍ଡି ଶାନ୍ତ, ମଧୁର କିନ୍ତୁ ଦୃଢ଼ସ୍ୱରରେ ପିଲମାନଙ୍କୁ କହିଲା, "ମୋର ସ୍ନେହର ପିଲମାନେ ! ଏହା ମୋର ତୁମମାନଙ୍କ ପାଇଁ ଶେଷ ବାର୍ତ୍ତା । ମୁଁ ଅନୁଭବ କରୁଛି ଯଦି ଆଜି ତୁମମାନଙ୍କର ପ୍ରକୃତ ମା'-ମାନେ ଥାଆନ୍ତେ ତେବେ ସେମାନେ ମଧ୍ୟ କହିଥାନ୍ତେ, "ଆମେ ଚାହୁଁ ହୁକ୍ ଯେ ଆମର ବୀର ପୁଅମାନେ ଦେଶ, ରାଜା ତଥା ନିଜର ସମ୍ମାନ ରକ୍ଷା କରିବା ପାଇଁ ହସି ହସି ନିଜର ପ୍ରାଣ ବଳି ଦିଅନ୍ତୁ ।"

ଏପରି ଭାଷଣ ଶୁଣି ଦସ୍ୟୁମାନଙ୍କ ମନରେ ମଧ୍ୟ ଭୟ ପଶିଗଲା । ହୁକ୍ କିନ୍ତୁ ପାଟିକରି କହିଲା, "ଆରେ ଶୀଘ୍ର ସେ ଝିଅଟାକୁ ବାନ୍ଧ

ପକାଅ ।" ତାକୁ 'ସ୍ମୀ' ଧାଇଁଯାଇ ୱେଣ୍ଡିକୁ ଜାହାଜର ମାସ୍ତୁଲରେ ବାନ୍ଧିପକାଇଲା । ସେ ଧିରେ ଧିରେ ୱେଣ୍ଡିର କାନରେ କହିଲା, "ତୁମେ ଯଦି ମୋର ମା' ହେବା ପାଇଁ ରାଜି ହେବ, ତେବେ ମୁଁ ତୁମ ଜୀବନ ରକ୍ଷାକରିଦେବ ।" କିନ୍ତୁ ୱେଣ୍ଡି ବିରକ୍ତି ପ୍ରକାଶ କରି କହିଲା, "ତୋ ଭଳିଆ ପୁଅ ହେବାଠାରୁ ପୁଅ ନଥିବା ଭଲ ।"

ୱେଣ୍ଡିକୁ ମାସ୍ତୁଲରେ ବନ୍ଧାଗଲାବେଳେ ପିଲାମାନଙ୍କ ଭିତରୁ କେହି ହେଲେ ସେଇ ଆଡ଼େ ଚାହୁଁ ନଥିଲେ । ସେମାନଙ୍କ ଆଖି ଥିଲା ସେଇ କାଠପଟାଟି ଉପରେ, ଯାହା ଉପରେ ସେମାନଙ୍କୁ ଚାଲିଯିବାକୁ ହେବ । ସେକଥା ଭାବି ଭାବି ସେମାନଙ୍କ ଦେହ ଶିତେଇ ଉଠୁଥାଏ । ହୁକ୍ ପିଲାଙ୍କ ଏ ଦଶା ଦେଖି ତା' କଳା କଳା ବାହାଡ଼ା ଦାନ୍ତ ଦେଖାଇ ହସୁଥାଏ । ସେ ୱେଣ୍ଡି ଆଡ଼କୁ ଯିବାକୁ ପାଦବଢ଼ାଇଲା । ସେ ଚାହୁଁ ଥିଲା ଯେ ୱେଣ୍ଡିର ମୁହଁଟାକୁ ବୁଲାଇ ରଖିବ, ଯେମିତିକି ପିଲା-ମାନେ କାଠପଟାଉପରେ ଚାଲି ସମୁଦ୍ରରେ ବୁଡ଼ିଯିବାର ଦୃଶ୍ୟ ସେ ଦେଖିପାରିବ । ସେ ଭାବିଥିଲା, ୱେଣ୍ଡି ଦୁଃଖରେ ଭାଙ୍ଗିପଡ଼ି କାନ୍ଦି-ଉଠିବ । କିନ୍ତୁ ହଠାତ୍ ତାକୁ ଆଉ ଗୋଟିଏ ଶବ୍ଦ ଶୁଣାଗଲା । "ଟିକ୍, ଟିକ୍, ଟିକ୍ ।" କୁମ୍ଭୀର ଶବ୍ଦ ।

ପ୍ରକୃତରେ ତାହା କୁମ୍ଭୀରର ଶବ୍ଦ ନଥିଲା । ପିଟର୍ ଅନୁକରଣ କରି ସେପରି ଶବ୍ଦ କରୁଥାଏ । କୁମ୍ଭୀରର ପେଟ ଭିତରେ ଥିବା ଘଡ଼ିଟି ସେ ରାତିରେ ବନ୍ଦ ହୋଇ ଯାଇଥିଲା । କିନ୍ତୁ ପିଟର୍ ଚମତ୍କାର ଭାବେ ଅନୁକରଣ କରି ସେ ଭଳି ଶବ୍ଦ କରୁଥାଏ । କୁମ୍ଭୀରଟା ମନ ଦୁଃଖରେ ପିଟର୍ ପଛେ ପଛେ ଚାଲିଥାଏ । ଲୁଚି ଲୁଚି ପିଟର୍ ସେହି ଦୀପର ଅନ୍ୟକଡ଼କୁ ଚାଲିଆସିଥିଲା । ସମୁଦ୍ରକୂଳରେ ନିଜପଦରେ ପହଞ୍ଚି ସିଧା ଚାଲିଲା ଜାହାଜ ଆଡ଼କୁ । ତା' ମନରେ କେବଳ ଗୋଟିଏ ଚିନ୍ତା—ଏଥର ହୁକ୍‌କୁ ମାରିବ କିମ୍ବା ନିଜେ ମରିବ ।

ନିଃଶବ୍ଦରେ ଦସ୍ୟୁମାନଙ୍କ ଜାହାଜ ପାଖରେ ପହଞ୍ଚି ସେ ଜାହାଜର ଡେକ୍ ଉପରେ ଚଢ଼ିଲା । ଚଢ଼ିଲାବେଳେ ଟିକ୍ ଟିକ୍ ଶବ୍ଦ କରୁଥାଏ ସେ ଶବ୍ଦ ଶୁଣି ହୁକ୍‌ର ମୁହଁ କିପରି ବିକୃତ ହୋଇଗଲା ତାହା ଦେଖିବା କଥା । କୁମ୍ଭୀର ଶବ୍ଦଟା ଧୀରେ ଧୀରେ ପାଖେଇ ଆସିଲା । ହୁକ୍ ଭୟରେ ଚିତ୍କାର କରିଉଠିଲା ସେ କୁମ୍ଭୀରଟା ପୁଣି ମୋ ଆଡ଼କୁ ଆସୁଛି । ମତେ ଶୀଘ୍ର ନେଇ ଲୁଚେଇ ଦିଅ ।" ପିଲାଗୁଡ଼ାକ ଆଗ୍ରହରେ ଜାହାଜର କଡ଼ରେ ଦେଖନ୍ତି ତ ପିଟର୍ ସେ ଭଳି ଶବ୍ଦ କରି ଡେକ୍ ଉପରକୁ ଚଢିବାକୁ ଚେଷ୍ଟା କରୁଛି । ପିଟର୍ ସେମାନଙ୍କୁ ଦେଖି ପାଟି ନ କରିବା ପାଇଁ ସଙ୍କେତ ଦେଲା ଏବଂ ଦସ୍ୟୁମାନେ ଜାଣିବା ପୂର୍ବରୁ ଡେକ୍ ଉପରକୁ ଡେଇଁପଡ଼ି ଧାଇଁ ଯାଇ ଜାହାଜର କ୍ୟାବିନ୍ ଭିତରେ ପଶି କବାଟ ବନ୍ଦ କରିଦେଲା । ତା'ପରେ କୁମ୍ଭୀର ଶବ୍ଦ ମଧ୍ୟ ବନ୍ଦ ହୋଇଗଲା ।

କୁମ୍ଭୀର ଶବ୍ଦ ବନ୍ଦ ହୋଇଯିବା ପରେ ହୁକ୍‌ର ଭୟ ଛାଡ଼ିଗଲା । ବର୍ତ୍ତମାନ ସେ ଆଦେଶ ଦେଲା ଯେ ପିଲାଗୁଡ଼ିକଙ୍କର ହାତ ଗୋଡ଼ ବାନ୍ଧି ସମୁଦ୍ରଭିତରକୁ ଫିଙ୍ଗିଦିଆଯାଉ । କିନ୍ତୁ ଠିକ୍ ସେତିକିବେଳେ କ୍ୟାବିନ୍ ଭିତରୁ ବଡ଼ ଜୋର୍‌ରେ କୁକୁଡ଼ା ବୋବାଇବା ଭଳି ଶୁଣାଗଲା । ହୁକ୍ ପାଟିକଲା, "ଆରେ ଯାଇ ଦେଖରେ କ୍ୟାବିନ୍ ଭିତରେ କ'ଣ ଗୋଟାଏ ଏମିତି ଶବ୍ଦ ଶୁଭୁଛି" । ଗୋଟାକ ପରେ ଗୋଟାଏ ଡାକୁ କ୍ୟାବିନ ଭିତରକୁ ଯାଉଥାନ୍ତି । ପିଟର୍ ଲୁଚି ରହି ଗୋଟାକ ପରେ ଗୋଟାଏ ସେମାନଙ୍କୁ ମାରିଦେଉଥାଏ । ଶେଷରେ ହୁକ୍ ଅତ୍ୟଧିକ ରାଗିଯାଇ ପାଟିକଲା "ଏଥର ମୁଁ ନିଜେ ଯାଇ ଦେଖିବି ତା' ଭିତରେ କ'ଣ ଅଛି ?" ସେ ଧାଇଁ ଧାଇଁ ଭିତରକୁ ପଶିଗଲା । କିନ୍ତୁ ଭୟରେ ବାହାରକୁ ଦୌଡ଼ିଆସି କହିଲା, "ଆରେ ସେ ଭିତରଟା ବିଲ୍‌କୁଲ୍ ଅନ୍ଧାର ହୋଇଛି । ବୋଧହୁଏ ତା

ଭିତରେ ଗୋଟିଏ ଭୂତ ପଶିଯାଇଛି ।" ହଠାତ୍ ତା ମୁଣ୍ଡରେ ଆଉ ଗୋଟିଏ ବୁଦ୍ଧି ଜୁଟିଗଲା । ସେ ଭାବିଲା "ମୁଁ ଏଥର ପିଲାମାନଙ୍କୁ ଜଣ ଜଣ କରି ସେ କ୍ୟାବିନ୍ ଭିତରକୁ ପଠାଇବି । ଯଦି ସେମାନେ ଭୂତଟାକୁ ମାରିଦିଅନ୍ତି ତାହାହେଲେ ଭଲ କଥା, କିମ୍ବା ଯଦି ସେମାନଙ୍କୁ ଭୂତଟା ଖାଇଯାଏ ତାହାହେଲେ ମୋର ବା କ'ଣ ଯାଏ ଆସେ ?"

ପିଲାମାନଙ୍କର ମଧ୍ୟ ସେଇଆ ଇଚ୍ଛା ଥିଲା । ସେମାନେ ଜାଣନ୍ତି କ୍ୟାବିନ୍‌ର ଭୂତ କିଏ । କିନ୍ତୁ ମୁହଁରେ ଖୁସିର ଚିହ୍ନ ନ ଦେଖାଇ ସେମାନେ ଜଣେ ଜଣେ ଭିତରକୁ ଟାଣିହୋଇ ଯାଉଥାନ୍ତି । ଅନ୍ୟ ଦସ୍ୟୁଗୁଡ଼ାକ ଭୂତ ଭୟରେ ଯେ ଯୁଆଡ଼େ ଲୁଚିଗଲେ ।

ଏ ଅବସରରେ ପିଲାମାନେ ଏବଂ ପିଟର କ୍ୟାବିନ୍‌ରୁ ଧିରେ ଧିରେ ବାହାରି ଯାଇ ଅନ୍ଧାରରେ ୱେଣ୍ଡିକୁ ମାସ୍ତୁଲରୁ ଫିଟାଇଦେଲେ । ୱେଣ୍ଡି ଜାଗାରେ ପିଟର୍ କଳା ଖଣ୍ଡେ ମୁହଁରେ ଘୋଡ଼ାଇ ହୋଇ ଠିଆହୋଇ ରହିଲା । ଯେପରି ହୁକ୍ ତାକୁ ଚିହ୍ନି ନପାରିବେ ।

ହୁକ୍ ଏ ମଧ୍ୟରେ ରାଗରେ ପାଟି କରୁଉଠିଲା, "ସେ ଝିଅ ଲାଗି ସବୁ ଗଣ୍ଡଗୋଳ । ଦସ୍ୟୁମାନଙ୍କ ଜାହାଜରେ ସ୍ତ୍ରୀଲୋକ ପଶିଲେ ହିଁ ଦୁର୍ଭାଗ୍ୟ ମାଡ଼ିଆସେ । ଆରେ, ସବୁ କୁଆଡ଼େ ମରିଗଲେ । ସେ ଝିଅଟାକୁ ଫିଟାଇ ମୋ ପାଖକୁ ଆଣ ।" ଅନ୍ଧାରରେ ଦସ୍ୟୁଗୁଡ଼ାକ ମାଡ଼ିଗଲେ । ମାସ୍ତୁଲ ପାଖରେ ଘୋଡ଼ାଇହୋଇ ଠିଆ ହୋଇ-ଥିବା ପିଟର୍ ପାଖକୁ ଯାଇ ଜଣେ ଦସ୍ୟୁ ତାଚ୍ଛଲ୍ୟ କରି କହିଉଠିଲା, "ସୁନ୍ଦରୀ ତୁମକୁ ଏଥର ରକ୍ଷା କରିବାକୁ କେହି ନାହିଁ ।"

"ହଁ ଜଣେ ଅଛି ।" ମାସ୍ତୁଲକୁ ଆଉଜି ଠିଆ ହୋଇଥିବା ପିଟର୍ କହିଲା ।

"ସେ କିଏ ?"

"ପ୍ରତିଶୋଧର ମୂର୍ତ୍ତି ପିଟର୍ ପାନ୍ ।" ଏହା କହି ପିଟର୍ ନିଜ ମୁଣ୍ଡ ଉପରୁ କନାଟି ବାହାର କରିଦେଲା ଏବଂ ଲୁଚି ରହିଥିବା ପିଲାମାନଙ୍କୁ ଆଦେଶ ଦେଲା, "ଶୀଘ୍ର ଧାଇଁଆସି ଏମାନଙ୍କୁ ଖତମ୍ କର ।" ପିଲାମାନେ ସେତେବେଳକୁ ପିଟର୍ କ୍ୟାବିନ୍ ଭିତରେ ଦେଇଥିବା ଖଣ୍ଡାଗୁଡ଼ିକ ଧରି ମାଡ଼ି ଆସିଲେ । ଦସ୍ୟୁମାନେ ଭାବିଥିଲେ ଯେ, ପିଲାଗୁଡ଼ାଙ୍କୁ ବୋଧେ ଭୂତଟା ଖାଇଯାଇଛି । କିନ୍ତୁ ବର୍ତ୍ତମାନ ସେମାନଙ୍କୁ ଖଣ୍ଡା ହାତରେ ସାମନାରେ ଦେଖି ତାଙ୍କର ପିଳେହି ପାଣି ହୋଇଗଲା । ଡେକ୍ ଉପରେ କିଛି ସମୟ ଧରି ଡାକୁ ଏବଂ ପିଲାମାନଙ୍କ ଭିତରେ ଖଣ୍ଡା ଯୁଦ୍ଧ ଚାଲିଲା । କେତେ ଦସ୍ୟୁ ମଲେ, କେତେ ପ୍ରାଣ ଭୟରେ ସମୁଦ୍ରକୁ ଡେଇଁ ପଡ଼ିଲେ ଏବଂ ଅନ୍ୟମାନେ ଆତ୍ମ-ସମର୍ପଣ କଲେ ।

ଏଣେ ହୁକ୍ ଜୀବନ ଭୟରେ କ୍ୟାବିନ୍ ଭିତରକୁ ଦୌଡ଼ି ପଳାଇଲା । ଏତେ ବଡ଼ ଲୋକଟା ହେଲେ କ'ଣ ହେବ, ହୁକ୍ ପ୍ରକୃତରେ ଘୋର ଡରକୁଳା ଥିଲା । ପିଟର୍ କିନ୍ତୁ ଭାରି ସାହସୀ । ପିଟର୍‌ର ମୁହଁରେ ହସ ଖେଳୁଥାଏ । ହସି ହସି ପିଟର୍ ଆହ୍ୱାନ କଲା, "ଦସ୍ୟୁ ସର୍ଦ୍ଦାର, ବର୍ତ୍ତମାନ ପରୀକ୍ଷାର ସମୟ, ଆତ୍ମଗୋପନ କରି ରକ୍ଷା ପାଇପାରିବନାହିଁ ।" ହୁକ୍ ଭାବିଥିଲା ଯେ, କୌଣସି ଭୂତ କିମ୍ବା ସଇତାନ୍ ଜାହାଜକୁ ଆକ୍ରମଣ କରିଛି । କିନ୍ତୁ ପିଟର୍‌କୁ ସ୍ୱଦେହରେ ସାମନାରେ ଦେଖି ସେ ଭୟ ଏବଂ ସନ୍ଦେହରେ ପଚାରିଲା, "ତୁମେ କିଏ ଏବଂ କେଉଁଠୁ ଆସିଛ ?" ପିଟର୍ କହିଲା, "ମୁଁ ହେଉଛି ଯୌବନ, ଆନନ୍ଦ । ମୁଁ ବଳ, ବୀର୍ଯ୍ୟ, ଓଜ । ମୁଁ ଶକ୍ତି ଓ ସାହସୀ ।"

ଏକଥା ଶୁଣି ହୁକ୍ ବାଘ ଭଳି ଗର୍ଜି ଉଠିଲା ଏବଂ ଖଣ୍ଡା ବୁଲାଇ ପିଟର୍‌କୁ ଆଘାତ କରିବା ପାଇଁ ଚେଷ୍ଟା କଲା । କିନ୍ତୁ ପିଟର୍

କ୍ଷୀପ୍ର ପଦକ୍ଷେପରେ ଅତି ସହଜରେ ହୁକ୍‌ର ଆଘାତକୁ ପ୍ରତିହତ କଲା । କିଛି ସମୟପରେ ହୁକ୍ ଦେଖିଲା ଯେ, ପିଟର୍ ବର୍ଚ୍ଛାଟିଏ ଧରି ଖୁବ୍ ବେଗରେ ତା' ଛାତି ଆଡ଼କୁ ମାଡ଼ିଆସୁଛି । ଭୟରେ ହୁକ୍ ସମୁଦ୍ର ଭିତରକୁ ଡେଇଁ ପଡ଼ିଲା । ଠିକ୍ ସେତିକିବେଳକୁ କୁମ୍ଭୀରଟା ମଧ୍ୟ ସେଠାରେ ଜଗିବସିଥିଲା । ସେଇ ମୁହୂର୍ତ୍ତରେ ଡାକୁ ସର୍ଦ୍ଦାର ଜେମ୍‌ସ ହୁକ୍‌ର ନାଁ ଚିରଦିନ ପାଇଁ ଲୋପପାଇଗଲା ।

ଏଣେ ପିଲାମାନଙ୍କ ଖୁସି କହିଲେ ନସରେ । ସମସ୍ତେ ପିଟର୍‌ର ଚାରିପାଖେ ଆନନ୍ଦରେ ନାଚି ବୁଲୁଥାନ୍ତି । ଜାହାଜଟା ବର୍ତ୍ତମାନ ପିଟର୍ ଏବଂ ପିଲାମାନଙ୍କ କବଳରେ । ପିଟର୍ ଜାହାଜର କ୍ୟାପ୍-ଟେନ୍ । ସମସ୍ତେ ଦସ୍ୟୁମାନଙ୍କର ପୋଷାକ ପିନ୍ଧିପକାଇଲେ । ଅବଶ୍ୟ ଏଥିପାଇଁ ୱେଣ୍ଡିକୁ କେତେ ଯେ ପରିଶ୍ରମ କରିବାକୁ ପଡ଼ିଲା କେବଳ ସେ ଜାଣେ । କାରଣ ଡାକୁମାନଙ୍କର ପୋଷାକଗୁଡ଼ାକୁ କାଟିକୁଟି ଛୋଟ କରିବାକୁ ପଡ଼ିଲା ।

ସେ ରାତିରେ ପିଟର୍ ଡାକୁ ସର୍ଦ୍ଦାର ହୁକ୍‌ର ହୁକାଟା ମୁହଁରେ ଧରି ହୁକ୍ ଭଳି ଅଭିନୟ କରିବାକୁ ଚେଷ୍ଟାକଲା ।

## ଘରବାହୁଡ଼ା

ପିଲାମାନେ ନିଖୋଜ ହେବା ପରଠାରୁ ଡାର୍ଲିଙ୍ଗ୍ ପରିବାରଟି ବଡ଼ ଦୁଃଖରେ କାଳ କାଟୁଥାନ୍ତି । ପିଲାମାନଙ୍କର ନିଖୋଜ ଘଟଣାରେ ଶ୍ରୀ ଡାର୍ଲିଙ୍ଗ୍ ନିଜକୁ ଦୋଷୀ ମନେ କରୁଥିଲେ । ସେ ଭାବୁଥିଲେ ଯେ, କୁକୁର ନାନାକୁ ବାନ୍ଧିଦେଇ ସେ ବହୁତ ବଡ଼ ଭୁଲ କରିଛନ୍ତି । ପ୍ରକୃତରେ କୁକୁରଟା ହିଁ ପିଲାମାନଙ୍କ ଅଭିଭାବକ ଭଳି କାମ କରୁ-

ଥିଲା । ନାନା ଉପରେ ବୃଥା ରାଗକରି ସେ ସ୍ନେହର ସନ୍ତାନମାନଙ୍କୁ ହରାଇଛନ୍ତି । ସେ ଅତି ସରଳ ଓ ସାଦାସିଧା ବ୍ୟକ୍ତି ଥିଲେ । ସେ ନିଜପ୍ରତି ଏଭଳି ଦଣ୍ଡବିଧାନ କଲେ ଯେ, ପିଲାମାନେ ଫେରିବା ଯାଏଁ ସେ ନାନା ପରି ଚଳିଲେ । ନାନାର ଛୋଟ ଘରଟିରେ ଖିଆ ପିଆ, ବସା ଉଠା ସବୁ । ତାଙ୍କର ଏ ପ୍ରତିଜ୍ଞା ଦେଖି ବନ୍ଧୁ, ବାନ୍ଧବ, ସ୍ତ୍ରୀ ଯେତେ ବୁଝାଇଲେ ବି ସେ ଅଟଳ । ଶେଷରେ ସେଇଆ ହିଁ ହେଲା । ଗୁରୁଣ୍ଡି ଗୁରୁଣ୍ଡି ନାନାର ଛୋଟ ଘର ଭିତରକୁ ଯାଇ ନିଜର ସମସ୍ତ କୃତ୍ୟ କଲେ । ତାଙ୍କ ସ୍ତ୍ରୀ ଯେତେ ଅନୁନୟ କଲେ ସୁଦ୍ଧା ସେ ଦୃଢ଼ ଭାବେ ମନା କରି କହିଲେ, "ନା, ନା, ମତେ ଆଉ ଡାକ ନାହିଁ । ଏହା ହିଁ ମୋର ଉପଯୁକ୍ତ ପ୍ରାୟଶ୍ଚିତ ।"

ସତରେ ଜର୍ଜ ଡାର୍ଲିଙ୍ଗଙ୍କ ପରି ଆଉ ଜଣେ ସରଳ ବ୍ୟକ୍ତି ମିଳିବା ଦୁଷ୍କର । ପ୍ରତିଦିନ ସନ୍ଧ୍ୟାରେ ସେଇ କୁକୁର ଘରେ ବସି ସେ ତାଙ୍କ ସ୍ତ୍ରୀଙ୍କ ସାଙ୍ଗରେ ପିଲାମାନଙ୍କର ଅତୀତର ହସ ଖେଳ କଥା ମନେପକାନ୍ତି । କୁକୁର ନାନାକୁ ସେ ଘରକୁ ଜମା ପୂରାଇ ଦିଅନ୍ତି ନାହିଁ । ନାନାକୁ ସେ କେବଳ ଶ୍ରଦ୍ଧା କରନ୍ତି ନାହିଁ, ତା'ର ପ୍ରଭୁ ଭକ୍ତିକୁ ସମ୍ମାନ କରନ୍ତି ।

ପ୍ରତିଦିନ ସକାଳୁ କୁକୁରର ସେଇ ଛୋଟ ଘରଟିକୁ କାର୍‌ରେ ଲଦି ଶ୍ରୀ ଡାର୍ଲିଙ୍ଗ୍ ତାଙ୍କ ଅଫିସ୍‌କୁ ନେଇଯାଆନ୍ତି ଏବଂ ଫେରିଲାବେଳେ ନେଇ ଆସନ୍ତି । ଏଥିରୁ ଜଣାପଡ଼େ ଯେ ଶ୍ରୀ ଡାର୍ଲିଙ୍ଗ୍ କେତେ ଦୃଢ଼-ପ୍ରତିଜ୍ଞ ଲୋକ ଥିଲେ । ତାଙ୍କର ଏଭଳି କାର୍ଯ୍ୟକଳାପ ପାଖ ପଡ଼ୋଶୀ-ମାନେ ଜାଣିଲେ ଏବଂ କେହି କେହି ମନ୍ତବ୍ୟ କଲେ ଯେ, ଡାର୍ଲିଙ୍ଗ୍ ସନ୍ତାନ ଶୋକରେ ପାଗଳ ହୋଇଗଲେ । ପଡ଼ୋଶୀ-ମାନଙ୍କ ମନ୍ତବ୍ୟ ଶୁଣି ଡାର୍ଲିଙ୍ଗ୍ ବହୁତ ବ୍ୟସ୍ତ ହେଉଥିଲେ; କିନ୍ତୁ ଉପାୟହୀନ ।

ମନ ଭିତରେ ସେ ଯେ ବହୁତ ଦୁଃଖ ପାଇଥିବେ ଏହା ସତ । କିନ୍ତୁ ବାହାରୁ ଦେଖି ତାହା ଜାଣିବା କଷ୍ଟ । ଛୋଟ ଛୋଟ ପିଲ-ମାନେ ଆସି ତାଙ୍କୁ କୁକୁରଘର ଭିତରେ ବସିଥିବା ଦେଖି ଥଟ୍ଟା କଲେ, ସେ କିଛି କହନ୍ତି ନାହିଁ । ସେ ବାଟେ କୌଣସି ସ୍ତ୍ରୀଲୋକ ଗଲେ ସେ ମୁଣ୍ଡରୁ ଟୋପି କାଢ଼ି ତାଙ୍କୁ ସମ୍ମାନ ଦେଖାନ୍ତି । ସହରରେ କୁକୁର ଡବାଟି ଧରି ଗାଡ଼ିରେ ଗଲାବେଳେ ଲୋକମାନେ ତାଳି ବଜାଇ ଥଟ୍ଟା କରନ୍ତି । ଏପରିକି ଖବରକାଗଜମାନଙ୍କରେ ମଧ୍ୟ ତାଙ୍କ ବିଷୟ ଆଲୋଚନାର ସାମଗ୍ରୀ ହେଲା । ବିଭିନ୍ନ ଯାଗାରୁ ତାଙ୍କୁ ବକ୍ତୃତା ଦେବା ପାଇଁ ମଧ୍ୟ ନିମନ୍ତ୍ରଣ ଆସିଲା । କିନ୍ତୁ ପ୍ରତ୍ୟେକ ପତ୍ରରେ ଲେଖାଥାଏ ଯେ, ଆପଣ ନିଜର କୁକୁର ଡବାରେ ବସି ଆସିବାକୁ ଅନୁରୋଧ । ପ୍ରତିଜ୍ଞାବଦ୍ଧ ଡାର୍ଲିଂ ନିର୍ବିକାର ଭାବେ ଏ ସମସ୍ତ ସହ୍ୟକଲେ ।

ଯେଉଁଦିନ ରାତିରେ ପିଲାମାନେ ଫେରିଆସିଲେ ସେଦିନ ଶ୍ରୀମତୀ ଡାର୍ଲିଂ ପିଲାମାନଙ୍କ ଘରେ ବସି ସ୍ୱାମୀଙ୍କ ଫେରିବା ବାଟକୁ ଚାହିଁ ବସିଥାନ୍ତି । ତାଙ୍କ ମୁହଁଟି ଦୁଃଖରେ ମଳିନ ପଡ଼ିଯାଇଥାଏ । ତାଙ୍କ ଚେହେରାଟି ବଡ଼ ଦୟନୀୟ ଦେଖାଯାଉଥାଏ । ତାଙ୍କୁ ଦେଖିଲେ ମନେ ହେଉଥାଏ ସତେ ଯେପରି ତାଙ୍କୁ କୌଣସି ଗୁରୁତର ବେମାରି ହୋଇଛି । ସେ ବା କ'ଣ ଜାଣିଥିଲେ ଯେ ପିଲାମାନେ ଆଜି ରାତିରେ ଫେରି ଆସୁଛନ୍ତି ।

ପିଲାମାନେ ବର୍ତ୍ତମାନ ସୁଦ୍ଧା ଘରଠାରୁ ମାତ୍ର ଦୁଇମାଇଲ୍ ଦୂରରେ ପହଞ୍ଚି ସାରିଥାନ୍ତି । କିଛି ସମୟପରେ ଶ୍ରୀମତୀ ଡାର୍ଲିଂ ଚୌକିରେ ବସି ବସି ସେମିତି ଶୋଇଯାଇଥାନ୍ତି । ନିଦରେ ଶୋଇରହି କିଛି ସମୟ ପରେ ସେ ତାଙ୍କ ପିଲାମାନଙ୍କ ନାଁ ଧରି ପାଟି କରିଉଠିଲେ । ଘରେ ତାଙ୍କ କୁକୁରଟି ଛଡ଼ା ଆଉ କେହି ନଥାଏ । ସେ କହିଉଠିଲେ,

"ନା, ନା, ମୁଁ ବର୍ତ୍ତମାନ ସ୍ୱପ୍ନ ଦେଖିଲି ଯେ, ମୋ ପିଲାମାନେ ଘରକୁ ଫେରିଆସିଛନ୍ତି । ନାନା ମଧ୍ୟ ସେତେବେଳକୁ ଅଧା ନିଦରେ ଶୋଇ-ଯାଇଥିଲି । କିନ୍ତୁ ପାଟି ଶୁଣି ନିଜର ଗୋଡ଼ଟା ନେଇ ଶ୍ରୀମତୀ ଡାର୍ଲିଙ୍ଗ୍‌ଙ୍କ କୋଳରେ ରଖିଦେଲି । ଏହାର କିଛି ସମୟପରେ କାଠ ଡବାଟି ମୁଣ୍ଡାଇ ଶ୍ରୀ ଡାର୍ଲିଙ୍ଗ୍ ଆସି ପହଞ୍ଚିଲେ । ତାଙ୍କ ପଛେ ପଛେ ସାଇର ଅନେକ ଲୋକ ସେ ବଡିଆ ଦୃଶ୍ୟ ଦେଖି ଆସି ପହଞ୍ଚିଥାନ୍ତି । ଶ୍ରୀ ଡାର୍ଲିଙ୍ଗ୍ ତାଙ୍କ ସ୍ତ୍ରୀଙ୍କୁ କହିଲେ, "ବାହାରେ ଲୋକମାନେ କିପରି ପାଟି କରୁଛନ୍ତି ଦେଖ ।" ସେତେବେଳକୁ ଶ୍ରୀ ଡାର୍ଲିଙ୍ଗ୍ ବହୁତ ଲୋକ-ପ୍ରିୟ ହୋଇଯାଇଥିଲେ । ତାଙ୍କ ସ୍ତ୍ରୀ ମୃଦୁ ଭର୍ତ୍ସନାକରି କହିଲେ— "ତୁମକୁ ସେ ଡବା ଭିତରେ ରହିବାକୁ ବହୁତ ଭଲ ଲାଗୁଛି ନା ?"

ଡାର୍ଲିଙ୍ଗ୍ ସ୍ୱୀକାର କଲେ ଯେ ଏହା କଠିନ ଦଣ୍ଡ । ପୁଣି ସ୍ତ୍ରୀଙ୍କୁ ଅନୁରୋଧକରି କହିଲେ, "ମତେ ଭାରି ନିଦ ଲାଗୁଛି । ତୁମେ ଟିକିଏ ଗୀତ ଗାଇଲେ ମୁଁ ଶୋଇଯାଆନ୍ତି । ଝରକାଟା କିନ୍ତୁ ବନ୍ଦ କରିଦିଅ, ମତେ ଥଣ୍ଡା ଲାଗୁଛି ।"

"ନା, ନା, ଝରକାଟା ମୁଁ ବନ୍ଦ କରିପାରିବିନି । ଝରକାଟା ସବୁ-ବେଳେ ମୋର ପିଲାମାନଙ୍କ ଫେରିବାପାଇଁ ଖୋଲା ହୋଇ ରହିଥିବ ।"

ଶ୍ରୀ ଡାର୍ଲିଙ୍ଗ୍ ଝରକାଟି ବନ୍ଦ କରିବାକୁ କହିଥିବାରୁ ନିଜର ଭୁଲ୍ ବୁଝିପାରି ଦୁଃଖପ୍ରକାଶ କଲେ । ତା'ପରେ ତାଙ୍କ ସ୍ତ୍ରୀ ପାଖ କୋଠରିରେ ଥିବା ପିଆନୋଟି ବଜାଇ ଗୀତ ଶୁଣାଇଲେ । ଶ୍ରୀ ଡାର୍ଲିଙ୍ଗ୍‌ଙ୍କୁ ଟିକିଏ ନିଦ ଆସିଯିବା ପରେ ପିଟର୍ ଏବଂ ଟୁଙ୍କୁରିପରୀ ସେ ଘର ଭିତରକୁ ଝରକା ଦେଇ ଉଡ଼ି ଆସିଲେ । ପିଟର୍ ଫୁସ୍ ଫୁସ୍ କରି କହିଲା, "ଶୀଘ୍ର ଝରକାଟିକୁ ବନ୍ଦ କରି ଦେ ।" ତା'ପରେ କହିଲା, "ଆମେ ଦରଜା ବାଟ ଦେଇ ଚାଲିଯିବା । ଓ୍ୱେଣ୍ଡି ଯେତେବେଳେ ଆସିବ ସେ ଭାବିବ ଯେ ତାଙ୍କ ମା' ଝରକା ବନ୍ଦ କରିଦେଇଛନ୍ତି ଏବଂ ବାଧ୍ୟ

ହୋଇ ସେମାନେ ଆମ ସାଙ୍ଗରେ ଫେରିଯିବେ ।" ଏପରି ଖରାପ କାମ କରୁଥିବା ସତ୍ତ୍ୱେ ପିଟର୍ ମନ ଖୁସିରେ ନାଚିଉଠିଲା । କିନ୍ତୁ ଆର ଘରେ କିଏ ପିଆନୋ ବଜାଉଛି ଦେଖିବାପାଇଁ ଯାଇ ଦେଖେ ତ ସେ ୱେଣ୍ଡିର ମା' । ସେ ଘୁଙ୍ଗୁରପୋକକୁ କହିଲା, "ୱେଣ୍ଡିର ମା' ସୁନ୍ଦର । ମୋ ମା' ଏହାଙ୍କଠାରୁ ଅଧିକ ସୁନ୍ଦର ।" ପ୍ରକୃତରେ ପିଟର୍ ତା' ନିଜ ମା'ଙ୍କ ସମ୍ବନ୍ଧରେ କିଛି ଜାଣିନଥିଲା । କିନ୍ତୁ ବେଳେବେଳେ ଏ ବିଷୟରେ ତାକୁ ମିଛ କହିବାକୁ ଭଲଲାଗେ । ୱେଣ୍ଡିର ମା' ବଜାଉଥିବା ଗୀତର ସ୍ୱରରୁ ପିଟର୍ ଜାଣିପାରିଲା ଯେ, ସେ ୱେଣ୍ଡିକୁ ଫେରିଆସିବାକୁ ଡାକୁଛନ୍ତି । ତେଣୁ ରାଗରେ ପାଟି କରି କହିଲା, "ତୁମେ ଆଉ ତୁମ ଝିଅକୁ କେବେ ଦେଖିପାରିବ ନାହିଁ । କାରଣ ତୁମ ଝରକାଟି ବନ୍ଦ ହୋଇଯାଇଛି ।" କିଛି ସମୟ ପରେ ପିଆନୋଟି ବାଜିବା ବନ୍ଦ ହୋଇଯାଇଥିବାରୁ ପିଟର୍ ସେ ଘରକୁ ଉଣ୍ଡି ଦେଖେ ତ ୱେଣ୍ଡିର ମା' ପିଆନୋ ଉପରେ ମୁଣ୍ଡରଖି ବସିଛନ୍ତି ଏବଂ ତାଙ୍କ ଦୁଇ ଆଖିରେ ଲୁହ ଭରିଯାଇଛି ।

ପିଟର୍ ଭାବିଲା ମୋ କଥା ଶୁଣି ତାଙ୍କର ମନ ଦୁଃଖ ହୋଇ-ଯାଇଛି । କିନ୍ତୁ ମୁଁ ଝରକାଟା ଖୋଲିଦେବି ବା କାହିଁକି ? ସେ ପୁଣି ଥରେ ସେହି ଘରକୁ ଉଣ୍ଡି ଦେଖେ ତ ତାଙ୍କ ଆଖିରୁ ଲୁହଧାର ବୋହି ଚାଲିଛି । ପିଟର୍ ଭାବିଲା ୱେଣ୍ଡି ପାଇଁ ତାଙ୍କ ମା' କେତେ ଦୁଃଖ କରୁଛନ୍ତି । ତା' ମନରେ ରାଗ ଆସୁଥାଏ ଯେ ସେ କାହିଁକି ଜାଣିପାରୁ-ନାହାନ୍ତି ଯେ, ୱେଣ୍ଡି ତାଙ୍କ ପାଖକୁ ଫେରିପାରିବ ନାହିଁ । କାରଣଟା ଅତି ସହଜ । ମୁଁ ମଧ୍ୟ ୱେଣ୍ଡିକୁ ଭଲପାଏ । ତେଣୁ ୱେଣ୍ଡି ଯଦି ମୋ ପାଖରେ ରହେ ଏମାନଙ୍କ ପାଖକୁ ଆଉ କିପରି ଆସିବ ? ଏହା କହି ପିଟର୍ ଖଟେଇ ହୋଇ ଭଲ ମୁହଁଟାକୁ କଲା । ତାକୁ ଜଣା ଯାଉଥାଏ ସତେ ଯେପରି ୱେଣ୍ଡିର ମା'ଙ୍କ ହୃଦୟ ଆସି ତାକୁ ବାଧ

କରୁଛୁ ଝରକାଟା ଖୋଲଦେବାକୁ । ଶେଷରେ ବିରକ୍ତ ହୋଇ ପିଟର୍ କହିଲ, "ଚାଲ ଆସ ଚାଲିଯିବା । ଝରକାଟା ଖୋଲଦେଇ ଏଭଳିଆ କାନ୍ଦୁରା ମା'ମାନଙ୍କଠାରୁ ଦୂରରେ ରହିବା ଭଲ ।" ଏହା କହି ଝରକାଟା ଖୋଲଦେଇ ସେ ଦୁହେଁ ଉଡ଼ି ଚାଲିଗଲେ ।

ଓ୍ୱେଣ୍ଡି, ଜନ୍ ଏବଂ ମାଇକେଲ୍ ଆସି ଦେଖନ୍ତି ତ ଝରକାଟା ଖୋଲାଅଛି । ସେମାନେ କଥା ହେଲେ—"ଚାଲ ଧୀରେ ଧୀରେ ନିଜ ନିଜ ଶେଯରେ ଯାଇ ଶୋଇପଡ଼ିବା । ସତେ ଯେପରି ଆମେ କେଉଁ-ଆଡ଼େ ଯାଇନଥିଲେ ।"

ସେମାନଙ୍କ ମା' ଯେତେବେଳେ ପିଲାମାନଙ୍କ ଘରକୁ ଦେଖିବାକୁ ଗଲେ ତାଙ୍କ ସ୍ୱାମୀ ଶୋଇପଡ଼ିଲେଣି କି ନାହିଁ, ସେ ଦେଖିଲେ ପିଲାମାନେ ଶେଯରେ ଆସି ଶୋଇଯାଇଛନ୍ତି । ପିଲାମାନେ ଉତ୍-କଣ୍ଠିତହୋଇ ରହିଥାନ୍ତି ଶୁଣିବା ପାଇଁ କେତେବେଳେ ମା' ଖୁସିରେ ପାଟିକରି ଉଠିବେ । କିନ୍ତୁ ସେପରି କିଛି ଶୁଣାଗଲା ନାହିଁ । ଶ୍ରୀମତୀ ଡାର୍ଲିଙ୍ଗ୍ ପିଲାମାନଙ୍କୁ ଦେଖି ସୁଦ୍ଧା ବିଶ୍ୱାସ କରିପାରୁନଥାନ୍ତି ଯେ, ଏହା ସତ ହୋଇଥାଇପାରେ । ଏହା ପୂର୍ବରୁ ସେ ଅନେକ ଥର ଏଭଳି ସ୍ୱପ୍ନ ଦେଖିଛନ୍ତି । ଏ ମଧ୍ୟ ସେଭଳି ଏକ ସ୍ୱପ୍ନ ହୋଇଥାଇ-ପାରେ । ଏପରି ଭାବି ସେ ଚୁପ୍ ହୋଇ ଚୌକିରେ ବସିଗଲେ । ପିଲାମାନେ କଥା କ'ଣ ବୁଝିପାରିଲେ ନାହିଁ ଏବଂ ତାଙ୍କ ମନରେ ଟିକିଏ ଭୟ ପଶିଗଲା । ଓ୍ୱେଣ୍ଡି ମା'ଙ୍କୁ ଡାକିଲା । ମା' କହି ଉଠିଲେ, "ଆରେ ଏ ତ ଓ୍ୱେଣ୍ଡିର ପାଟିପରି ଶୁଭୁଛି । ତଥାପି ସେ ଏହାକୁ ସ୍ୱପ୍ନ ବୋଲି ଭାବୁଥାନ୍ତି । ତା'ପରେ ଜନ୍ ଓ ମାଇକେଲ୍ ମା'ଙ୍କୁ ଡାକିଲେ । "ଆରେ ଏ ତ ମାଇକେଲ୍‌ର ପାଟି ଭଳି ଶୁଭୁଛି ।" ଏହା କହି ମା' ପିଲାମାନଙ୍କ ଆଡ଼କୁ ହାତ ବଢ଼ାଇଲେ । ଓ୍ୱେଣ୍ଡି, ଜନ୍ ମାଇକେଲ୍ ଶେଯରୁ ଉଠି ଧାଇଁଯାଇ ମା'ଙ୍କୁ କୁଣ୍ଢାଇ ପକାଇଲେ ।

ମା' ପିଲମାନଙ୍କୁ କୁଣ୍ଢାଇ ଧରି ଶ୍ରୀ ଡାର୍ଲିଂଙ୍କୁ ଉଠାଇଲେ । ଏ ମଧ୍ୟରେ ନାନା ଆସି ପହଞ୍ଚିଯାଇଥାଏ । ଏଇ ମୁହୂର୍ତ୍ତପାଇଁ ସମସ୍ତେ କେତେ ଦିନରୁ ରହିଁବସିଥିଲେ । ଏ ଦୃଶ୍ୟ ଝରକା ବାହାରେ ରହି ପିଟର୍ ଦେଖୁଥିଲା । ତା'ଭାଗ୍ୟରେ କିନ୍ତୁ ଏଭଳି ମିଳନ ସୁଖ ନାହିଁ ।

କିଛି ସମୟପରେ ଓ୍ୱେଣ୍ଡି, ପିଟର୍ ପାନ୍ ଏବଂ ଅଜଣା ରାଇଜର ପିଲ୍‌ମାନଙ୍କ କଥା ମା'ଙ୍କୁ ଶୁଣାଇଲା । ହତଭାଗ୍ୟ ପିଲଗୁଡ଼ିକ ସେ ପର୍ଯ୍ୟନ୍ତ ଘର ବାହାରେ ଉତ୍କଣ୍ଠିତ ହୋଇ ଅପେକ୍ଷା କରିଥାନ୍ତି— କେତେବେଳେ ଓ୍ୱେଣ୍ଡିର ମା' ତାଙ୍କୁ ଘର ଭିତରକୁ ଡାକିବେ । ସେମାନେ ମୁହୂର୍ତ୍ତ ଗଣୁଥାନ୍ତି । ସେମାନେ ଏକଠାରୁ ପାଞ୍ଚଶହପର୍ଯ୍ୟନ୍ତ ଗଣିସାରିଲା ପରେ ଆଉ ବିଳମ୍ବ ସହ୍ୟ କରି ପାରିଲେ ନାହିଁ ଏବଂ ଧାଡ଼ିହୋଇ ଓ୍ୱେଣ୍ଡିର ମା'ଙ୍କ ଆଗରେ ଠିଆହୋଇ ନମସ୍କାର ଜଣାଇଲେ । କଥାରେ ପ୍ରକାଶ ନ କଲେ ମଧ୍ୟ ସେମାନଙ୍କ ଆଖିର ଚାହାଣୀରୁ ଓ୍ୱେଣ୍ଡି ମା'ଙ୍କ ପ୍ରତି ଶ୍ରଦ୍ଧା ଏବଂ ଘରେ ପ୍ରବେଶ ପାଇଁ ଅନୁରୋଧ ସ୍ପଷ୍ଟ ଜଣାପଡୁଥିଲା ।

ଶ୍ରୀମତୀ ଡାର୍ଲିଂ କହିଉଠିଲେ ଯେ, ସେ ଏ ପିଲ୍‌ମାନଙ୍କୁ ଘରେ ରଖିବା ପାଇଁ ରାଜି ଅଛନ୍ତି; କିନ୍ତୁ ଶ୍ରୀ ଡାର୍ଲିଂ ଏକା ଥରକେ ଛଅ ଛଅଟା ପିଲଙ୍କର ଦାୟିତ୍ୱ ନେବା ପାଇଁ ରାଜି ହେଲାପରି ଦେଖାଯାଉନଥାନ୍ତି । ସେ ଓ୍ୱେଣ୍ଡିକୁ କହିଲେ, "ତୁ ଏ ସମସ୍ତଙ୍କୁ ଆମ ଘରକୁ ନେଇ ଆସିବୁ ବୋଲି ମୁଁ ଜାଣିନଥିଲି ।" ପିଲମାନେ ଏକଥା ଶୁଣି ଦୁଃଖରେ କହିଲେ, "ଆପଣଙ୍କୁ କଷ୍ଟ ଦେଇ ଆମେ ଏଠାରେ ରହିବାକୁ ଚାହୁଁ ନାହୁଁ । ଓ୍ୱେଣ୍ଡିର ମା' ଶ୍ରୀ ଡାର୍ଲିଂଙ୍କ ଏପରି ବ୍ୟବହାର ଦେଖି ମନେ ମନେ ଲଜ୍ଜା ଅନୁଭବ କରୁଥାନ୍ତି । କିନ୍ତୁ ଆଉ ବେଶି ସମୟ ଅଭିନୟ କରି ନ ପାରି ଶ୍ରୀ ଡାର୍ଲିଂ ପିଲଙ୍କ ଭଳି କହିଁ କହିଁ ହୋଇ କାନ୍ଦି କହିଲେ ଯେ, ଏହାଠାରୁ ଅଧିକା ଆନନ୍ଦ ଆଉ

କ'ଣ ହୋଇପାରେ । ସବୁ ପିଲ୍ମାନେ ଆଜଠାରୁ ତାଙ୍କ ପାଖରେ ରହିବେ । ସେ କେବଳ ଅଭିମାନ କରିଥିଲେ ଯେ ପିଲ୍ମାନେ ୱେଣ୍ଡିର ମା'ଙ୍କୁ କେବଳ ଅନୁମତି ମାଗିଲେ, ଆଉ ତାଙ୍କ ଉପସ୍ଥିତି ଭୁଲିଗଲେ । ତା'ପରେ ପିଲ୍ମାନେ ତାଙ୍କ ଭୁଲ୍ ପାଇଁ କ୍ଷମା ମାଗିଲେ ଏବଂ ଶ୍ରୀ ଡାର୍ଲିଙ୍ଗ୍ ସମସ୍ତଙ୍କ ରହିବାପାଇଁ ଆୟୋଜନରେ ଲଗିପଡ଼ିଲେ ।

ପିଟର୍ ଚାଲି ଯିବା ପୂର୍ବରୁ ୱେଣ୍ଡି ସାଙ୍ଗରେ ଶେଷଥର ପାଇଁ କଥା ହେଲ୍ । ଝରକା ପାଖରେ ଠିଆହୋଇ ସେ ୱେଣ୍ଡିକୁ କହିଲା, "ଆଚ୍ଛା, ଏଥର ମୁଁ ଯାଉଛି ।"

"ତୁମେ କ'ଣ ମୋ ବାପା, ମା'ଙ୍କ ସାଙ୍ଗରେ ଦେଖା ନ କରି ଚାଲିଯିବ ?"

ଏତିକ ବେଳକୁ ୱେଣ୍ଡିର ମା' ଝରକା ପାଖକୁ ଆସିଲେ । କାରଣ ବର୍ତ୍ତମାନଠାରୁ ୱେଣ୍ଡି ଉପରେ କଡ଼ା ନଜର ରଖିବାକୁ ସେ ଚାହୁଁଥିଲେ । ସେ ପିଟର୍‌କୁ କହିଲେ ଯେ ସେ ସବୁ ପିଲ୍ମାନଙ୍କୁ ଘରେ ରଖିବା ପାଇଁ ଠିକ୍ କରିଛନ୍ତି ଏବଂ ପିଟର୍ ମଧ୍ୟ ଆସି ରହି ପାରେ । ଉତ୍ତରରେ ପିଟର୍ ପଚାରିଲା—

"ମତେ କ'ଣ ସ୍କୁଲରେ ପଢ଼ିବାକୁ ଛାଡ଼ିବ ?"

"ହଁ ।"

"ତା'ପରେ ଅଫିସ୍‌କୁ ଚାକିରି କରିବାକୁ ଯିବ ?"

"ହଁ, ତାହା ବି ହୋଇପାରେ ।"

"ତା'ହେଲେ ମୁଁ କ'ଣ ଜଣେ ବୟସ୍କ ଲୋକ ହୋଇଯିବ ?"

"ହଁ, ଖୁବ୍ ଶୀଘ୍ର ।'

"ନା, ନା, ମୁଁ ସ୍କୁଲ ଯିବାକୁ ଚାହେଁ ନାହିଁ । ମୁଁ ଚାହେଁ ସବୁବେଳେ ଏମିତି ପିଲ୍ ହୋଇଥିବ । ବଡ଼ ହୋଇଗଲେ ମୁହଁରେ ଦାଢ଼ି ହୋଇଯିବ । ମତେ ଦାଢ଼ି ଭଲ ମଧ୍ୟ ଲଗେ ନାହିଁ ।"

ୱେଣ୍ଡି କହିଲା, "ପିଟର୍ ! ତୋ ମୁହଁରେ ଦାଢ଼ି ଉଠିଲେ ତୁ ସୁନ୍ଦର ଦିଶିବୁ ।" ମା' ସ୍ନେହବଶତଃ ପିଟର୍‌କୁ ଧରିବାକୁ ହାତ ବଢ଼ାଇଲା ବେଳକୁ ସେ ଘୁଞ୍ଚିଗଲା । କହିଲା, "ମତେ କେହି ଧରି-ପାରିବେ ନାହିଁ ।

"କିନ୍ତୁ, ତୁ କେଉଁଠି ରହିବୁ ?" ମା' ପଚାରିଲେ ।

ମୁଁ ଘୁଙ୍ଗୁରପକ୍ଷୀ ସାଙ୍ଗରେ ଜଙ୍ଗଲରେ ୱେଣ୍ଡି ପାଇଁ ତିଆରି କରାଯାଇଥିବା କୁନି ଘରଟିରେ ରହିବ ।"

ୱେଣ୍ଡି ପାଟିକରି ଉଠିଲା—"ସତରେ କେତେ ମଜା ହେବ ?" କିନ୍ତୁ ତାର ମା' ତା' ହାତଟିକୁ ଜୋର୍‌ରେ ଧରିଥାନ୍ତି ।

ପିଟର୍ ୱେଣ୍ଡିକୁ ଚାହିଁ କହିଲା, "ସତରେ ମଜା ହେବ । ତୁମେ ମୋ ସାଙ୍ଗରେ ଆସିବ ?" ୱେଣ୍ଡିର ମା' ସଙ୍ଗେ ସଙ୍ଗେ କହିଲେ, "ନା, ମୁଁ ଆଉ ତାକୁ କେବେ ଛାଡ଼ିବି ନାହିଁ ।"

"କିନ୍ତୁ ମା' ତା'ର ଯତ୍ନ ନେବାପାଇଁ ଜଣେ ମା' ନିହାତି ଦର-କାର୍", ୱେଣ୍ଡି କହିଲା ।

"ତୋର କ'ଣ ଦରକାର ନାହିଁ ?" ମା' କହିଲେ ।

ଶ୍ରୀମତୀ ଡାର୍ଲିଙ୍ଗ୍ ଦେଖିଲେ ଯେ, ପିଟର୍‌ର ମୁହଁଟି ଶୁଖିଗଲା । ଦୟାର୍ଦ୍ର ସ୍ୱରରେ ସେ କହିଲେ ଯେ, ୱେଣ୍ଡିକୁ ପ୍ରତିବର୍ଷ ଶୀତଦିନ ସରିଯିବାପରେ ଗୋଟିଏ ସପ୍ତାହ ପାଇଁ ଛାଡ଼ିବେ । ୱେଣ୍ଡି କିନ୍ତୁ ଆହୁରି ବେଶିଦିନ ପିଟର୍ ସାଙ୍ଗରେ ରହିବା ପାଇଁ ଚାହୁଁଥିଲା । ତାକୁ ଜଣାପଡ଼ୁଥିଲା ସତେ ଯେପରି ଶୀତଋତୁଟା ସରିବାକୁ ବହୁତ ଦିନ ବାକି ଅଛି । ସେ ପିଟର୍‌କୁ କହିଲା, "ତୁ ମତେ ଭୁଲିଯିବୁ ନାହିଁ ତ ?"

"ସେକଥା କ'ଣ ହୋଇପାରେ ?" ତା'ପରେ ମନ ଖୁସିରେ ପିଟର୍ ଉଡ଼ି ଚାଲିଗଲା । ସେତେବେଳକୁ ଶ୍ରୀମତୀ ଡାର୍ଲିଙ୍ଗ୍ ସ୍ନେହରେ

ତାକୁ ଚୁମାଟିଏ ଦେଲେ । ଶ୍ରୀମତୀ ଡାର୍ଲିଙ୍ଗ୍ ଭାରି ଖୁସି ଯେ ୱେଣ୍ଡି ପିଟର୍ ସାଙ୍ଗରେ ଗଲାନାହିଁ ।

ଏହାପରେ ଅବଶ୍ୟ ସବୁ ପିଲାମାନଙ୍କୁ ସ୍କୁଲ ଯିବାକୁ ପଡ଼ିଲା । ସପ୍ତାହେ ଖଣ୍ଡେ ସ୍କୁଲକୁ ଯାଇଛନ୍ତି କି ନାହିଁ ସେମାନେ ଭାବିଲେ, ସତେ ସେମାନେ କେତେ ବୋକା ଯେ ସେଇ ଦ୍ୱୀପରେ ନରହି ଏଠାକୁ ଆସିଛନ୍ତି । କିନ୍ତୁ ଏବେ ବା ଆଉ କ'ଣ କରିବେ ? ତେଣୁ ବାଧ୍ୟ ହୋଇ ଆମ ତୁମ ଭଳି ସାଧାରଣ ଜୀବନ ଯାପନ କଲେ । ଦୁଃଖର କଥା, ଖୁବ୍ କମ୍ ଦିନ ପରେ ସେମାନଙ୍କ ଉଡ଼ିବା ଶକ୍ତି ଚାଲିଗଲା । ପ୍ରଥମେ ପ୍ରଥମେ ନାନା ସେମାନଙ୍କ ଗୋଡ଼ଗୁଡ଼ିକ ଖଟ ଖୁରାରେ ବାନ୍ଧି ରଖୁଥିଲା । ଯେପରିକି ସେମାନେ ରାତିରେ କେଉଁଆଡ଼େ ଉଡ଼ି ନ ଯାଆନ୍ତି । ଏପରି ଆସ୍ତେ ଆସ୍ତେ ସେମାନେ ଉଡ଼ିବା ଭୁଲିଗଲେ । ଶୀତଦିନ ସରି ବସନ୍ତ ସମୟ ଆସିଲା । ଦିନେ ପିଟର୍ ଉଡ଼ି ଉଡ଼ି ଆସି ୱେଣ୍ଡିକୁ ନେବାକୁ ପହଞ୍ଚିଲା । ୱେଣ୍ଡି ତା' ସାଙ୍ଗରେ ଉଡ଼ି ଉଡ଼ି ଅଜଣା ରାଇଜକୁ ଚାଲିଗଲା । ୱେଣ୍ଡିକୁ ଲାଜ ଲାଗୁଥାଏ । ସେ ଯେଉଁ ଜାମାଟି ପିନ୍ଧିଥିଲା ସେଇଟି ଛୋଟ ହୋଇଯାଇଛି । କିନ୍ତୁ ପିଟର୍‌ର ସେଥିପ୍ରତି ଲକ୍ଷ୍ୟ ନଥାଏ । କାରଣ ସେ ଖାଲି କହି ଚାଲିଥାଏ ସେ ଗତବର୍ଷ ଭିତରେ କ'ଣ କ'ଣ କରିଛି । ୱେଣ୍ଡି ପିଟର୍ ସାଙ୍ଗରେ ସେତିକି ଦିନ ଖୁବ୍ ଆନନ୍ଦରେ କଟାଇଲା ।

ତା' ପରବର୍ଷ ଶୀତ ସରି ବସନ୍ତ ଆସିଲା ବେଳକୁ ୱେଣ୍ଡି ପିଟର୍‌କୁ ଅପେକ୍ଷା କରି ରହିଲା; କିନ୍ତୁ ପିଟର୍ ଆସିଲାନାହିଁ । ବର୍ଷେକ ପରେ ପୁଣି ବସନ୍ତଋତୁ ଆସିଲା ବେଳକୁ ପିଟର୍ ଆସି ପହଞ୍ଚିଲା । ଗୋଟିଏ ବର୍ଷର ବ୍ୟବଧାନ ୱେଣ୍ଡିର କ୍ରମବର୍ଦ୍ଧମାନ ବୟସ ପାଇଁ ଯଥେଷ୍ଟ ହେଲେ ବି ଛୋଟ ଶିଶୁ ପିଟର୍ ପାଇଁ କିଛି ନୁହେଁ ।

ପିଟର୍ ସାଙ୍ଗରେ ଦେଖା ହେବା ବୋଧହୁଏ ଓ୍ୱେଣ୍ଡିର ତାହା ଶେଷଥର । କେତେବର୍ଷ ବା ଆଉ ଓ୍ୱେଣ୍ଡି ସାନଝିଅ ହୋଇଥିବ । ପିଟର୍ ମଧ୍ୟ ଆଉ ପ୍ରତିବର୍ଷ ଆସେ ନାହିଁ । ଥରେ ଅନେକ ବର୍ଷ ପରେ ପିଟର୍ ଆସି ଦେଖେତ ଓ୍ୱେଣ୍ଡି ବଡ଼ ହୋଇ ବଢ଼ି ହୋଇ-ଗଲଣି । ବର୍ତ୍ତମାନ ପିଟର୍ ତା' ଆଗରେ ତା' ଖେଳନା ବାକ୍ସର ଗୋଟିଏ କଣ୍ଢେଇ ପରି ଜଣାପଡ଼ିଲା । ସତରେ ଓ୍ୱେଣ୍ଡି କେତେ ବଡ଼ ହୋଇଯାଇଛି ! ଅବଶ୍ୟ ସେଥିପାଇଁ ଦୁଃଖ କରିବା କଥା ନୁହେଁ । କାରଣ ଓ୍ୱେଣ୍ଡିକୁ ବଡ଼ ହୋଇ ଘର ସଂସାର କରିବାକୁ ହିଁ ଭଲ ଲାଗୁଥିଲା ।

ଏ ଭିତରେ ପିଲାମାନେ ମଧ୍ୟ ବଡ଼ ହୋଇଯାଇଥାନ୍ତି । ଜାଆଁଳା ଭାଇମାନଙ୍କ ସହ ଟିଟୁ, ମିଣ୍ଟୁ ଆଜକାଲି ବ୍ୟାଗ୍ ଏବଂ ଛତା ଧରି ଅଫିସ୍‌କୁ ଯିବାର ଦେଖାଯାଏ । ମାଇକେଲ୍ ରେଳଇଞ୍ଜିନ୍ ଡ୍ରାଇଭର କାମ କରେ ଏବଂ ବୁଟୁ ଖୁବ୍ ବଡ଼ ଘର ଝିଅକୁ ବାହାହୋଇ ଜମିଦାର ହୋଇଥାଏ ।

ଆଚ୍ଛା, ସେ ଯେଉଁ କଚେରୀ ଭିତରେ କୋର୍ଟ ପିନ୍ଧି ଜଜ୍ ହୋଇ ବସିଛନ୍ତି ତାଙ୍କୁ ଚିହ୍ନିପାରୁଛ ? ସେ ହେଉଛି ଆମର ପୂର୍ବ ପରିଚିତ କର୍ଟୁ । ଆଉ ଏ ଯେଉଁ ଦାଢ଼ିଆ ଲୋକଟା ତା' ଛୋଟ ଛୋଟ ପିଲା ଛୁଆଙ୍କୁ ଧରି ବସିଛି ସେ ହେଉଛି ଜନ୍ ।

ଓ୍ୱେଣ୍ଡିର ମଧ୍ୟ ଏ ଭିତରେ ଛୋଟ ଝିଅଟିଏ ହୋଇଥାଏ । ତା' ନାଁ ଜେନ୍ । ଜନ୍ମ ହେଲାଦିନଠାରୁ ସେ ଝିଅଟା ଖାଲି ପ୍ରଶ୍ନ ପଚାରିବାକୁ ଲାଗିଥାଏ । ଯେମିତି ସେ କଥା କହିବା ଆରମ୍ଭ କରିଛି ସେ ପିଟର୍ ପାନ୍ ବିଷୟରେ ସବୁ ପଚାରିବା ଆରମ୍ଭ କଲା । ଓ୍ୱେଣ୍ଡି ମଧ୍ୟ ପିଟର୍ ବିଷୟରେ ଯାହା ସବୁ ଜାଣିଥିଲା ଜେନ୍‌କୁ ଶୁଣାଏ । ଦିନେ ରାତିରେ ଓ୍ୱେଣ୍ଡି କୁନି ଝିଅ ଜେନ୍‌କୁ ଖୁଆଇପିଆଇ କାହାଣୀ ଶୁଣାଇ

ଶୁଆଇଦେଲା । ତା'ପରେ ଓ୍ୱେଣ୍ଡି ନିଆଁ ଉନ୍ମେଇ ପାଖରେ ବସି ଝିଅ ପାଇଁ ସ୍ୱେଟରଟିଏ ବୁଣୁଥାଏ । ଠିକ୍ ସେତିକବେଳକୁ ତା'ର ସେଇ ପୁରୁଣା ପରିଚିତ କୁମ୍ଭୀର ଶବ୍ଦଟି ଶୁଣାଗଲା । ଝରକାଟି ହଠାତ୍ ଖୋଲିଗଲା ଏବଂ ପିଟର୍ ଆସି ଘର ଭିତରେ ହାଜର ହୋଇଗଲା । ତା' ଚେହେରାରେ ଟିକିଏ ହେଲେ ପରିବର୍ତ୍ତନ ହୋଇନଥାଏ । ସେ ଠିକ୍ ଛୋଟ ପିଲାଟି ଭଳି ରହିଥାଏ । ଘରଟା ବିଶେଷ ଆଲୁଅ ହୋଇ-ନଥିବାରୁ ପିଟର୍ ଓ୍ୱେଣ୍ଡିର ଚେହେରାରେ ହୋଇଥିବା ପରିବର୍ତ୍ତନକୁ ଦେଖି ପାରୁନଥିଲା । ପିଟର୍‌କୁ ଦେଖି ଓ୍ୱେଣ୍ଡିର ହୃଦୟ ଭିତରେ ସତେ ଯେପରି କିଏ ଚିତ୍କାର କରିଉଠିଲା—"ଆହା, ଯଦି ଆଜି ମୁଁ ସେହି ଅଶାନ୍ତର ଛୋଟ ଝିଅ ପିଲାଟିଏ ହୋଇଥାନ୍ତି ନା !" ପିଟର୍ ପଚାରିଲା, "ଓ୍ୱେଣ୍ଡି ! ଜନ୍ ଏବଂ ମାଇକେଲ୍ କୁଆଡ଼େ ଗଲେ ?"

ଦୁଃଖଭରା ସ୍ୱରରେ ଓ୍ୱେଣ୍ଡି ଉତ୍ତର ଦେଲା "ସେମାନେ ଆଜି-କାଲି ଏଠାରେ ରହୁନାହାନ୍ତି ।" ତା'ପରେ ପିଟର୍ କୁନିଝିଅଟିଏ ଖଟରେ ଶୋଇଥିବା ଦେଖି ପଚାରିଲା, "ଏ ପିଲାଟି ତୁମ ଘରକୁ କେଉଁଠୁ ଆସିଛି ?"

ଓ୍ୱେଣ୍ଡି ଭାବିଥିଲା ପିଟର୍ ବୋଧହୁଏ ସବୁକଥା ବୁଝିଯିବ । କିନ୍ତୁ ପିଟର୍ ମୁହଁରୁ ସେପରି କିଛି ଆଭାସ ମିଳୁନଥିଲା । ସେ ପଚାରିଲା, "ପିଟର୍ ! ମୋତେ କ'ଣ ସାଙ୍ଗରେ ନେବା ପାଇଁ ଆସିଛ କି ?"

"ହଁ, ସେଇଥି ପାଇଁ ତ ଆସିଛି ? ତୁ କ'ଣ ମୋ ସାଙ୍ଗରେ ଯିବା କଥା ଭୁଲିଯାଇଛୁ କି ?" ଓ୍ୱେଣ୍ଡି ଜାଣିଥିଲା ଯେ ପିଟର୍‌କୁ ବୁଝାଇ କିଛି ଲାଭ ନାହିଁ । କାରଣ ଏ ମଧ୍ୟରେ କେତେ ଯେ ବର୍ଷ ବିତିଯାଇଛି ସେ କଥା ପିଟର୍ ଜାଣିପାରିନାହିଁ । ତେଣୁ ଦୁଃଖ ମନରେ କହିଲା, "ନା, ପିଟର୍, ମୁଁ ତୋ ସାଙ୍ଗରେ ଯାଇପାରିବିନାହିଁ । ମୁଁ ଉଡ଼ିବା ପ୍ରଣାଳୀ ଭୁଲିଗଲିଣି ।"

"ମୁଁ ପୁଣି ଥରେ ଶିଖାଇଦେବ ।"

"ନା, ମୋ ପାଇଁ ଆଉ ସମୟ ନଷ୍ଟ କରି କିଛି ଲାଭ ନାହିଁ । ଏହା କହି ଓ୍ୱେଣ୍ଡି ଲାଇଟ୍‌ଟି ଜଳାଇଦେଲା । ଓ୍ୱେଣ୍ଡିର ବୟସ୍କ ରୂପ ଦେଖି ପିଟର୍ ଆଶ୍ଚର୍ଯ୍ୟ ଏବଂ ଦୁଃଖରେ ତାକୁ ଚାହିଁରହିଲା । ଓ୍ୱେଣ୍ଡି କହିଲା, "ପିଟର୍, ମୁଁ ଏ ଭିତରେ ଏତେ ବଡ଼ ହୋଇଯାଇଛି ଏକଥା ଦେଖିପାରୁଛ ଟି ? ଏ ଯେଉଁ କୁନିଝିଅଟିକୁ ଦେଖୁଛ ସେ ମୋର ଝିଅ ।" ପିଟର୍ ଏ କଥା ଶୁଣି ଦୁଃଖରେ ତଳେ ବସିପଡ଼ି କାନ୍ଦକାନ୍ଦ କହିଲା, "ନା, ଏହା ଅସମ୍ଭବ ।" ଓ୍ୱେଣ୍ଡି ପିଟର୍‌କୁ କେମିତି ବୁଝାଇବ ସେକଥା ଭାବୁଥାଏ । କିଛି ଉପାୟ ନ ପାଇ ଓ୍ୱେଣ୍ଡି ଅନ୍ୟ କୋଠରୀକୁ ଚାଲିଗଲା । ପିଟର୍‌ର କାନ୍ଦ ଶବ୍ଦରେ କୁନି ଝିଅ ଜେନ୍‌ର ନିଦ ଭାଙ୍ଗିଗଲା । ସେ ଉଠିପଡ଼ି କହିଲା, "ଏ ପିଲା, ତୁ କାହିଁକି କାନ୍ଦୁଛୁ ? ତୁ କିଏ ?"

"ମୋ ନାଁ ପିଟର୍ ପାନ୍ । ମୁଁ ମୋ ମା'କୁ ସାଙ୍ଗରେ ନେଇ ଯିବାକୁ ଆସିଥିଲି ।"

ଆଚ୍ଛା ତାହାହେଲେ ତୁମେ ସେଇ ପିଟର୍ ପାନ୍ । ତୁମକୁ ଦେଖି-ବାକୁ ମୁଁ ଅନେକ ଦିନରୁ ଅପେକ୍ଷାରେ ଥିଲି । ଏମାନଙ୍କ କଥା ଶୁଣି ଓ୍ୱେଣ୍ଡି ପୁଣି ଫେରିଆସିଲା ସେଠାକୁ । ଜେନ୍ ମା'ଙ୍କୁ କହିଲା, "ସତରେ ମା' ଏ ପିଲାଟିକୁ ମଧ୍ୟ ଗୋଟିଏ ମା' ଦରକାର ।"

"ହଁ, ତା' ତ ମୁଁ ଭଲକରି ଜାଣେ ।"

"ମୁଁ ଯାଉଛି ଓ୍ୱେଣ୍ଡି" କହି ପିଟର୍ ଝରକାବାଟେ ଉଡ଼ି ଚାଲିଗଲା । ଏବଂ ତା' ପଛେ ପଛେ କୁନିଝିଅ ଜେନ୍ ମଧ୍ୟ ଉଡ଼ି ଚାଲିଗଲା । ଭବିଷ୍ୟତରେ ମା' ହେବାର ଗୁରୁଦାୟିତ୍ୱର ଅଭ୍ୟାସ ଲାଗି ।

ଓ୍ୱେଣ୍ଡି ଦୀର୍ଘ ନିଃଶ୍ୱାସଟେ ଛାଡ଼ି କହିଲା, "ମୁଁ ହେଲେ

ତୁମମାନଙ୍କ ସାଙ୍ଗରେ ଉଡ଼ି ଚାଲିଯାଇପାରନ୍ତି । ଉଡ଼ି ଯାଉ ଯାଉ ଜେନ୍ ଉତ୍ତରଦେଲା, 'ମା' ହେବାର ସ୍ୱପ୍ନ ତୋର ସାର୍ଥକ ହୋଇଛି । ବର୍ତ୍ତମାନ ସେ ସ୍ୱପ୍ନ ଦେଖିବା ଅଧିକାର ମୋର ।"

ୱେଣ୍ଡି ସେମିତି ଝରକା ପାଖରେ ଠିଆ ହୋଇ ପିଟର୍ ଏବଂ ଜେନ୍‌କୁ ଉଡ଼ିଯିବାର ଦେଖୁଥାଏ । ଏହାର ଅନେକ ବର୍ଷ ପରେ ଜେନ୍ ମଧ୍ୟ ବଡ଼ ହୋଇଯାଇଥାଏ ଏବଂ ତା'ର ମାର୍ଗାରେଟ୍ ବୋଲି ଗୋଟିଏ ଝିଅ ଜନ୍ମ ହୋଇଥାଏ । ପ୍ରତିବର୍ଷ ପିଟର୍ ବସନ୍ତରତୁ ବେଳକୁ ଉଡ଼ି ଉଡ଼ି ଆସେ ଏବଂ ମାର୍ଗୋରେଟ୍‌କୁ ସାଙ୍ଗରେ ନେଇ ଅଜଣା ରାଇଜକୁ ଚାଲିଯାଏ । ସେହିପରି ମାର୍ଗାରେଟ୍ ମଧ୍ୟ ବଡ଼ ହେଲେ ତା'ର ମଧ୍ୟ ଗୋଟିଏ ଝିଅ ହେବ ଯେକି ପିଟର୍‌ର ମା' ହୋଇ ପ୍ରତିବର୍ଷ ତା' ସାଙ୍ଗରେ ଅଜଣା ରାଇଜକୁ ଉଡ଼ିଯାଉଥିବ । ଏଭଳି ଯେତେଦିନ ପର୍ଯ୍ୟନ୍ତ ଶିଶୁମାନଙ୍କର ହୃଦୟ ସରଳ ଏବଂ ପବିତ୍ର ହୋଇ ରହିଥିବ ଏ କାହାଣୀ ଶେଷ ହେବ ନାହିଁ ।

---

## ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବନ୍ଧୁ

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

**ନିମ୍ନଲିଖିତ ବିଶ୍ୱବିଖ୍ୟାତ ଲେଖକମାନଙ୍କ ବହିର କିଶୋର ସଂସ୍କରଣ ସୁଲଭ ମୂଲ୍ୟରେ ସଂଗ୍ରହ କରି ପିଲାମାନଙ୍କୁ ପଢିବାକୁ ଦିଅନ୍ତୁ ।**

ଚାର୍ଲସ୍ ଡିକେନ୍ସ୍
ଆଲେକ୍‌ଜାଣ୍ଡର ଡୁମା
ୱାଲଟର୍ ସ୍କଟ୍
ଭିକ୍ଟର ହ୍ୟୁଗୋ
ଏଚ୍. ରାଇଡର୍ ହାଗାର୍ଡ
ଲର୍ଡ ଲିଟନ୍
ମାର୍କ ଟୋୟେନ୍
ଷାରଲେଟ୍ ବ୍ରଣ୍ଟେ
ଜୁଲ ଭର୍ଣ୍ଣ
ଜୋନାଥନ୍ ସୁଇଫଟ୍
ଆନ୍ଥୋନି ହୋପ୍
ଆର୍. ଏଲ୍. ଷ୍ଟିଭେନସନ୍
ୱାସିଂଟନ୍ ଇରଭିଙ୍ଗ
ଆର୍. ଏମ୍. ବାଲାଣ୍ଟାଇନ
ଏଚ୍. ଜି. ୱେଲସ୍
ଅଲିଭର ଗୋଲଡ୍‌ସ୍ମିଥ୍
ଉଇଲିୟମ ଥାକେରି
ଆର୍. ସାବାଟିନି
ସରଭେଣ୍ଟିସ୍
ଡଷ୍ଟୟେଭସି
ଜେନ୍ ଅଷ୍ଟିନ୍

ଆର୍ଥର୍ କୋନାନ୍‌ଡୟଲ୍
ଉଇଲ୍‌କି କୋଲିନ୍ସ
ଜି. ଏ. ହେଣ୍ଟି
ଥୋମାସ୍ ହାର୍ଡି
ଦାନିଏଲ୍ ଡିଫୋ
ବ୍ଲାକ୍‌ମୋର୍
ଜର୍ଜ ଇଲିଅଟ୍
ବଙ୍କିମଚନ୍ଦ୍ର
ଶରତ୍‌ଚନ୍ଦ୍ର
କାଳିଦାସ
ଶୂଦ୍ରକ
ସେକ୍ସପିଅର
ଲିଓ ଟଲଷ୍ଟୟ
ଚେକଭ୍
ହୋମର୍
ଗର୍କି
ମୋପାସାଁ
ଗ୍ରୀମସ୍
ଆଣ୍ଡରସନ୍
ଯେମସ୍ଲବ
ଯୋଶେଫ କୋନାର୍ଡ

**ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨**